ଅମର ଜୀବନୀମାଳା

# ଉତ୍କଳମଣି ଗୋପବନ୍ଧୁ

ଲେଖକ :—

ଲାଲ ନଗେନ୍ଦ୍ର କୁମାର ରାୟ

ପ୍ରାପ୍ତ ସ୍ଥାନ :—

ଦି ଉତ୍କଳ ଷ୍ଟୋର୍ସ

ବାଲୁବଜାର, କଟକ—୨

# ଉତ୍କଳମଣି ଗୋପବନ୍ଧୁ



ଇଂରେଜ ଅମଳରେ ଯେଉଁ ଚାରି ଜଣ ଲୋକ ଏବର ଓଡ଼ିଶାର ରୂପ ରେଖ ଦେଇ ଅଛନ୍ତି, ସେ ଚାରି ଜଣ ହେଉଛନ୍ତି କର୍ମବୀର ଗୌରୀଶଙ୍କର ରାୟ, କୁଳବୃଦ୍ଧ ମଧୁସୂଦନ ଦାସ, ଭକ୍ତବର ରାଧାନାଥ ରାୟ ଓ ଉତ୍କଳମଣି ଗୋପବନ୍ଧୁ ଦାସ । ଗୌରୀଶଙ୍କର ସବୁଠାରୁ ବୟସରେ ବଡ଼, ଗୋପବନ୍ଧୁ ସମସ୍ତଙ୍କଠାରୁ ସାନ । ଚାରି ଜଣଯାକ ଗରିବ ଘରେ ଜନ୍ମ ଥିଲେ ଚାରିହେଁ ଯାକ ନିଜର କର୍ମଜୀବନ ଶିକ୍ଷକତା କରି ଆରମ୍ଭ କରିଥିଲେ ଓ ଭଲ ଲେଖା ଲେଖି କରି ପାରୁଥିଲେ । ଜଣେ ସମ୍ବାଦ ପତ୍ର ଦ୍ୱାରା ଜନମତ ସୃଷ୍ଟି କରି, ଜଣେ ନିଜର ଅପୂର୍ବ କବିତ୍ୱ ଶକ୍ତିରେ ଜାତୀୟ-ସାହିତ୍ୟକୁ ନୂଆ କଳେବର ଦେଇ, ଜଣେ ଗଣ ଜାଗରଣର ସବୁ ବିଷୟରେ ଅଗ୍ରଦୂତ ହୋଇ ଏବଂ ଜଣେ ନିଜର ସେବା, ତ୍ୟାଗ ଓ ମହାନ୍ ହୃଦୟବତ୍ତା ଦ୍ୱାରା ଜାତିର ସେବା କରି ଅଛନ୍ତି ।

ମଧୁବାବୁଙ୍କଠାରୁ ବହୁତ ପରେ ଜନ୍ମ ହୋଇ ବହୁ ଆଗରୁ ମରିଥିଲେ ମଧ୍ୟ ଗୋପବନ୍ଧୁ ମଧୁବାବୁଙ୍କର ଜାତୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ଅଛନ୍ତି ବୋଲି ନିଜେ କହୁଛନ୍ତି । ବସ୍ତୁତଃ ଉତ୍କଳ ସମ୍ମିଳନୀର ଆରମ୍ଭ ହେଲାବେଳେ ଗୋପବନ୍ଧୁ ସେଥିରେ ଛାତ୍ରାବସ୍ଥାରୁହିଁ

ସ୍ୱେଚ୍ଛାସେବକ ହୋଇଥିଲେ, ଅଥଚ ମଧୁ ବାବୁ ଥିଲେ ବଡ଼ ନେତା । ଏହା ୧୯୦୩ ଖ୍ରୀଷ୍ଟାବ୍ଦର କଥା ଏବଂ ସେତେବେଳକୁ ଗୋପବନ୍ଧୁ ମୋଟେ ୨୬ ବର୍ଷର ଯୁବକ ।

ମଧୁ ବାବୁ ଅବଶ୍ୟ ଓଡ଼ିଶାର ଅଳ୍ପ ଶିକ୍ଷିତ ସମ୍ପ୍ରଦାୟରେ ଜାତୀୟ ଭାବଧାରା ଖେଳାଇ ଥିଲେ, ସନ୍ଦେହ ନାହିଁ । ସେତେବେଳର ସେହି ଅନ୍ଧକାରମୟ ଅବସ୍ଥାରେ ମଧୁ ବାବୁ ଦୀର୍ଘ କାଳ ଆଲୁଅ ଦେଖାଇ ଥିଲେ ଏହା ମଧ୍ୟ ସତ୍ୟ; କିନ୍ତୁ ଦେଶର ପିଲା, ବୁଢ଼ା, ଉଚ୍ଚ, ନୀଚ, ପାଠୁଆ, ଅପାଠୁଆ ସମସ୍ତଙ୍କ ପ୍ରାଣରେ ଦେଶର ଆହ୍ୱାନ ସଞ୍ଚାରି ଥିଲେ ଗୋପବନ୍ଧୁ ।

ତାଙ୍କର ଜନ୍ମ ଗ୍ରାମ ହେଉଛି ପୁରୀ ଜିଲ୍ଲାର ସୁଆଣ୍ଡୋ ନାମକ ଏକ କ୍ଷୁଦ୍ର ବ୍ରାହ୍ମଣ ଶାସନ । ସେ ଜନ୍ମ ହୋଇଥିଲେ ଅକ୍ଟୋବର ମାସ ୯ ତାରିଖ ୧୮୭୭ ଖ୍ରୀଷ୍ଟାବ୍ଦରେ । ଏହି ବର୍ଷ ମହାରାଣୀ ଭିକ୍ଟୋରିଆଙ୍କ ରଜତ ଜୟନ୍ତୀ ସମଗ୍ର ଭାରତରେ ଖୁବ ସମାରୋହରେ ପାଳିତ ହୋଇଥିଲା । ଏଣୁ ଏର ବର୍ଷଟା ସ୍ମରଣୀୟ ।

ଗୋପବନ୍ଧୁଙ୍କର ପିତାଙ୍କ ନାମ ହେଉଛି ଦଇତାରି ଦାଶ ଏବଂ ମାତାଙ୍କ ନାମ ସ୍ୱର୍ଣ୍ଣମୟୀ ଦେବୀ । ତାଙ୍କର ପିତା ଉପୁର ଉପୁର ୪ ଗୋଟି ସ୍ତ୍ରୀ ବିଭା ହୋଇଥିଲେ । ଗୋପବନ୍ଧୁ ହେଉଛନ୍ତି ତୃତୀୟ ପତ୍ନୀଙ୍କର ଏକମାତ୍ର ସନ୍ତାନ ।

ଅତି ଶୈଶବରେ ଗୋପବନ୍ଧୁଙ୍କର ମା ମରିଗଲେ । ଏଣୁ କରି ଗୋପବନ୍ଧୁ ଏବଂ ତାଙ୍କର ସାବତ ବଡ଼ ଭାଇ ନାରାୟଣଙ୍କୁ ଲାଳନ ପାଳନ କରିଥିଲେ ତାଙ୍କର ପିଉସୀ କମଳା ଦେବୀ । ଏହି ପିଉସୀ ବାଲ୍ୟବିଧବା ଥିବାରୁ ନିଜ ଭାଇଙ୍କ ପାଖରେ ରହୁଥିଲେ ଏବଂ ପିଲା ଦୁଇଟିଙ୍କୁ ବିଶେଷ କରି ସାନ ଗୋପବନ୍ଧୁଙ୍କୁ ସେ ଅତି ସ୍ନେହ

ଆଦରରେ ବଢ଼ାଇଥିଲେ । ଗୋପବନ୍ଧୁ ମଧ୍ୟ ପିଉସୀଙ୍କୁ ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ।

ଆମଦେଶରେ ୧୮୮୨ । ୮୩ ଖ୍ରୀଷ୍ଟାବ୍ଦରେ ସ୍କୁଲ ସଂଖ୍ୟା ଅତ୍ୟନ୍ତ ଅଳ୍ପ ଥିଲା । କବିବର ରାଧାନାଥ ଓଡ଼ିଶାର ଜଏଣ୍ଟ ସ୍କୁଲ ଇନ୍ସପେକ୍ଟର ରୂପେ ସାଧ୍ୟମତେ ସ୍କୁଲ ସଂଖ୍ୟା ବଢ଼ାଉଥାଆନ୍ତି । ଶିଶୁ ଅବସ୍ଥାରେ ଗୋପବନ୍ଧୁଙ୍କ ପିତା ଘରେ ଅବଧାନ ରଖି ପୁଅଙ୍କୁ ବିଦ୍ୟାଶିକ୍ଷା ଦେଉ ଥିଲେ । ସେ ସେ ଯୁଗର ମୁକ୍ତାର ଥିବାରୁ ଅଧିକାଂଶ ବେଳ ପୁରୀରେ ରହୁଥିଲେ । ଘରେ ଅବଧାନ ରହିବାରୁ ଦୁଇ ଭାଇଙ୍କର ପ୍ରାଥମିକ ଶିକ୍ଷାର ଅନେକାଂଶରେ ସୁବିଧା ହୋଇଥିଲା ଏବଂ ଗୋପବନ୍ଧୁ ବର୍ଣ୍ଣ ଶିକ୍ଷା ପରେ ଗୋପୀଭାଷା, ଭାଗବତ ପ୍ରଭୃତି ଯେମିତି ଗାଇ ପାରିଲେ ପଣକିଆ, ଓଡ଼ାଙ୍କ, ଫେଡ଼ାଙ୍କ ମଧ୍ୟ ସେହିପରି ଶିଖି ପାରିଲେ ।

ଭାଗବତ, କୋଇଲି ଆଦି ବହିରୁ ଗୋପବନ୍ଧୁ ଅନେକ ପଦ୍ୟ ମୁଖସ୍ଥ କରି ବୋଲି ପାରୁଥିଲେ । ଏପରି ଚର୍ଚ୍ଚା କରିବା ଯୋଗୁଁ ସେହି ଶିଶୁ କାଳରୁ ମଧ୍ୟ ତାଙ୍କର ଓଡ଼ିଆ କବିତା ଲେଖିବା ପ୍ରବୃତ୍ତି ଜାତ ହୋଇଥିଲା । ଅବଧାନେ କିନ୍ତୁ ଏ ସବୁ ଦେଖି ବଡ଼ ବିରକ୍ତ ହେଉଥିଲେ ଏବଂ ଥରେ ପୁଅଙ୍କ ଗୁଣ ପିତାଙ୍କୁ କହି ଦଣ୍ଡ ଦିଆଇବାକୁ ଟାଣି ନେଇଥିଲେ । ଗୋପବନ୍ଧୁଙ୍କ ପିତା ସେକାଳିଆ ଲୋକ ଥିଲେ ମଧ୍ୟ ସାହିତ୍ୟ ଜଗତର ମଣିଷ ଥିଲେ । ସେ ପୁଅର ଏହି କବିତ୍ୱ ଶକ୍ତି ସ୍ଫୁରଣ ଦେଖି ମନେ ମନେ ଖୁସି ହୋଇଥିଲେ ଏବଂ ପୁଅଙ୍କୁ ଆଧୁନିକ ଧରଣରେ ଖୁବ୍ ଉଚ୍ଚ ଶିକ୍ଷିତ କରିବାକୁ ଲକ୍ଷ୍ୟ ରଖିଥିଲେ । ପିଲାଦିନେ ଗୋପବନ୍ଧୁ ଖୁବ୍ ବୁଦ୍ଧିଆ ପିଲା ଥିଲେ ଏବଂ ତାଙ୍କ ସ୍ମରଣ ଶକ୍ତି ଖୁବ୍ ପ୍ରଖର ଥିଲା । ପ୍ରତିଦିନ ସେ ସନ୍ଧ୍ୟାକୁ ଭାଗବତ ପଢ଼ା ହେଲାବେଳେ ଭାଗବତ ଟୁଙ୍ଗିକୁ ଯାଇ ତାହା ମନ ଦେଇ ଶୁଣୁଥିଲେ ।

ଭାଗବତ ପ୍ରତି ପିଲାଦିନୁ ଏହି ଆଗ୍ରହ ଏବଂ ନିଷ୍ଠା ଯୋଗୁଁ ପରବର୍ତ୍ତୀ ଜୀବନରେ ତାଙ୍କର ଲେଖା ଏବଂ କହିବା ଭଙ୍ଗୀ ଭାଗବତ ଭାଷାର ଅନୁରୂପ ହୋଇ ଯାଇଥିଲା ଓ ଭାଗବତ ଓଡ଼ିଶାର ଘରେ ଘରେ ପୂଜିତ ବୋଲି ତାଙ୍କର ବକ୍ତବ୍ୟ ଯେମିତି ସରଳ ସହଜ ହୋଇ ଉଠିଲା ସେମିତି ହୃଦୟସ୍ପର୍ଶୀ ମଧ୍ୟ ହୋଇ ପାରିଥିଲା ।

ପିଲାଦିନୁ ଗୋପବନ୍ଧୁଙ୍କଠାରେ ଆଉ ଗୋଟିଏ ଗୁଣ ଦେଖା ଦେଇଥିଲା । ତାହା ହେଉଛି ତାଙ୍କର ନିର୍ଜନପ୍ରିୟତା । ପରବର୍ତ୍ତୀ ଜୀବନରେ ଏହି ଗୁଣ ଯୋଗୁଁ ସେ ଓଡ଼ିଶାର ପ୍ରକୃତ ସତ୍ତା ଏତେ ଭଲ କରି ନିଜକୁ ଏକ କରି ପାରିଥିଲେ ।

ଏମିତି ଭାବରେ ଗାଁ ଅବଧାନଠାରୁ ଯେତିକି ଶିଖିବା କଥା ସେତିକି ଶିଖିଗଲେ । ଏହା ପରେ ପାଠ ପଢ଼ିବା ପାଇଁ ଗ୍ରାମରେ ବିଦ୍ୟାଳୟ ନ ଥିଲା । ଦଇତାରି ଦାଶ ସାନ ପୁଅ ଦୁହିଙ୍କୁ ପଢ଼ାଇବା ପାଇଁ ଅର୍ଥ ସାହାଯ୍ୟ ଦେଇ ଗ୍ରାମରେ ଗୋଟିଏ ପ୍ରାଥମିକ ବିଦ୍ୟାଳ ଇ ଥିଲେ । ପୁଅ ଦୁହେଁ ସେଠାରେ ନାମ ଲେଖାଇ ପଢ଼ିଲେ ।ଶ୍ରସମୟରେ ପାଶ କଲେ । ବଡ଼ ନାରାୟଣଚନ୍ଦ୍ର ପାଶ କ ମାନ ପଢ଼ା ପ୍ରତି ତାଙ୍କର ଆଗ୍ରହ ଜଣା ଗଲା ନାହିଁ । ଅତଏବ ତାଙ୍କୁ ଆଉ ପଢ଼ାଇବା ଇଚ୍ଛା ପିତାଙ୍କର ରହିଲା ନାହିଁ । ସେ ଗୋପବନ୍ଧୁଙ୍କର ଆଗ୍ରହ ଓ ପାଠର ଉନ୍ନତି ଦେଖି କେବଳ ତାଙ୍କୁହିଁ ଉଚ୍ଚ ଶିକ୍ଷା ଦେବାକୁ ସ୍ଥିର କଲେ ଏବଂ ବଡ଼କୁ ସେତିକିରେ ପଢ଼ା ବନ୍ଦ କରି ଘର କାମରେ ଲଗାଇ ଦେଲେ ।

ଗ୍ରାମ ଠାରୁ ୫ ମାଇଲ ଦୂରରେ ରୂପଦେଇପୁର ଗ୍ରାମ । ସେଠାରେ ଗୋଟିଏ ଭର୍ଣ୍ଣାକୁଲର ସ୍କୁଲ ଚାଲୁଥାଏ । ଗୋପବନ୍ଧୁଙ୍କୁ ସେହି ସ୍କୁଲରେ ଭର୍ତ୍ତି କରି ଦିଆଗଲା ।

ଆମ ଓଡ଼ିଶାରେ ଶାସନୀ ବ୍ରାହ୍ମଣମାନେ ସଦମର୍ଯ୍ୟାଦାରେ ଜଣା । ପ୍ରାୟ ସମସ୍ତଙ୍କ ଘରେ କୁଳ ଦେବତାର ବିଗ୍ରହ ଥାଏ । ଗୋପବନ୍ଧୁଙ୍କ ପିତାଙ୍କ ଘରେ ମଧ୍ୟ ଥିଲା । ଏହି ବିଗ୍ରହ ସମ୍ବନ୍ଧରେ ଏକ ବିଚିତ୍ର କାହାଣୀ ମଧ୍ୟ ରହିଅଛି । ଗୋପବନ୍ଧୁଙ୍କର ପିତା ହେଉଛନ୍ତି ଦୁଇ ଭାଇ । ଦୀନବନ୍ଧୁ ଓ ଦଇତାରି । ଦୀନବନ୍ଧୁଙ୍କର ଗୋଟିଏ ବୋଲି ପୁଅ ଜନ୍ମି ଅକାଳେ ମରି ଯିବାରୁ ଦୀନବନ୍ଧୁ ମନ କଷ୍ଟରେ ସନ୍ନ୍ୟାସୀ ହୋଇ ଘରୁ ଚାଲି ଯାଇଥିଲେ । ନାନା ତୀର୍ଥ ବୁଲି ନବ ଦ୍ୱୀପରେ ଥିଲା ବେଳେ କେହି ଜଣେ ଭକ୍ତ ବାସରେ ସ୍ୱପ୍ନାଦେଶ ପାଇ ନିଜର ଆରାଧ୍ୟ ଦେବତା ବିନୋଦବିହାରୀଙ୍କୁ ତାଙ୍କୁ ସମର୍ପଣ କରିଥିଲା । ଦୀନବନ୍ଧୁ ମହା ଆନନ୍ଦରେ ଉକ୍ତ ମୂର୍ତ୍ତି ଘରକୁ ଆଣି ସ୍ଥାପନା କରାଇ ପୁଣି ଚାଲିଗଲେ । ମୂର୍ତ୍ତି ସେବା ପୂଜାର ଦାୟିତ୍ୱ ଦଇତାରି ଗ୍ରହଣ କଲେ ।

ବଡ଼ ଭାଇ ଅପୁତ୍ରକ ଓ ସନ୍ନ୍ୟାସୀ । ନିଜର ପ୍ରଥମା ସ୍ତ୍ରୀ ଗର୍ଭରୁ ସନ୍ତାନ ହେଲା ନାହିଁ ଦେଖି ଦଇତାରି ପୁଣି ବାହା ହୋଇଥିଲେ । ତାଙ୍କର ଦ୍ୱିତୀୟା ସ୍ତ୍ରୀ ଗର୍ଭରୁ ଜନ୍ମିଥିଲେ ନାରାୟଣ ।

ରୂପଦେଇପୁର ସ୍କୁଲର ହେଡ୍ ପଣ୍ଡିତ ଥିଲେ ସଦାଶିବ ମିଶ୍ର ନାମକ ଜଣେ ବ୍ରାହ୍ମଣ । ସଦାଶିବଙ୍କର ଓଡ଼ିଆ ସାହିତ୍ୟରେ ଯଥେଷ୍ଟ ପାଣ୍ଡିତ୍ୟ ଥିଲା । ସେ ପ୍ରାଚୀନ ଓଡ଼ିଆ ଛନ୍ଦ ଓ କାବ୍ୟମାନ ସୁନ୍ଦର ଭାବରେ ଗାଇ ପାରୁଥିଲେ ଏବଂ ବ୍ୟାଖ୍ୟା କରିପାରୁଥିଲେ । ଗୋପବନ୍ଧୁ ତାଙ୍କର ଘରେ ରହି ପଢ଼ିଲେ । ତାଙ୍କର ଓଡ଼ିଆ ସାହିତ୍ୟ ପ୍ରତି ଅନୁରାଗ ଏହି ପଣ୍ଡିତ ମହାଶୟଙ୍କର ପ୍ରେରଣା ଏବଂ ଉତ୍ସାହରୁ ଦୃଢ଼ ହୋଇଥିଲା । ଏହାଙ୍କ ଠାରୁ ଗଭୀର ଉତ୍ସାହ ପାଇ ଗୋପବନ୍ଧୁ ଓଡ଼ିଆ କବିତା ଲେଖିବାକୁ ପ୍ରବୃତ୍ତ ହୋଇଥିଲେ ଏବଂ ବେଳେ ବେଳେ ନିଜର

କବିତାମାନ ପଣ୍ଡିତଙ୍କୁ ପଢ଼ି ଶୁଣାଉ ଥିଲେ । ବସ୍ତୁତଃ ଏହି ବିଦ୍ୟାଗୁରୁଙ୍କୁ ଗୋପବନ୍ଧୁ ପିତୃ ତୁଲ୍ୟ ଭକ୍ତି ଓ ସମ୍ମାନ ଦେଖାଉ ଥିଲେ ଏବଂ ପରବର୍ତ୍ତୀ ଜୀବନରେ ମଧ୍ୟ ଦେଖାଇ ଥିଲେ ।

ପୂର୍ବେ ଭଣ୍ଡାରିକୁଳର ସ୍କୁଲମାନଙ୍କରେ କେବଳ ଓଡ଼ିଆ ପଢ଼ା ହେଉଥିଲା । ଇଂରେଜୀ ପାଇଁ ସ୍ୱତନ୍ତ୍ର ମାଇନର ବା ମଧ୍ୟ ଇଂରାଜୀ ବିଦ୍ୟାଳୟ କେତେଗୁଡ଼ିଏ ଥିଲା । ଏଠାରୁ ବୃତ୍ତି ନେଇ ଦକ୍ଷତାର ସହିତ ପାଶ କଲେ ମଧ୍ୟ ଇଂରେଜୀ ଜାଣି ନ ଥିବାରୁ ଗୋପବନ୍ଧୁଙ୍କୁ ପୁରୀ ଜିଲ୍ଲା ସ୍କୁଲରେ ସବୁ ତଳ ଶ୍ରେଣୀରେ ଭର୍ତ୍ତି ହେବାକୁ ପଡ଼ିଥିଲା । ଇଂରେଜୀ ଛଡ଼ା ବାକି ସବୁ ବିଷୟ ତ ତାଙ୍କୁ ଭଲ ଭାବରେ ଜଣା ଥିଲା । ଫଳରେ ବର୍ଷ ଦୁଇଟାରେ ଡବଲ୍ ପ୍ରମୋସନ ପାଇ ସେ ଚତୁର୍ଥ ଶ୍ରେଣୀକୁ ଉଠି ଯାଇଥିଲେ । ଏଥି ନିମିତ୍ତ ଇଂରେଜୀ ଛଡ଼ା ଅନ୍ୟ ସବୁ ବିଷୟରେ ପୁରସ୍କାର ମଧ୍ୟ ପାଉଥିଲେ ଏବଂ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ଖାସ କରି ଓଡ଼ିଆ ସାହିତ୍ୟରେ ମଧ୍ୟ ସେ ବିଭିନ୍ନ ଭଦ୍ରବ୍ୟକ୍ତିଙ୍କ ପ୍ରଦତ୍ତ ଅନେକଗୁଡ଼ିଏ ପୁରସ୍କାର ପାଇଥିଲେ ।

ପୁରୀ ଜିଲ୍ଲା ସ୍କୁଲରେ ପଢିଲା ବେଳେ ଏକ ଘଟଣା ଘଟିଲା । ଯେଉଁ ଘଟଣାରେ ପ୍ରମାଣ ହୋଇଗଲା ଯେ ସେ ଯେପରି ନିର୍ଭୀକ ସେହିପରି ସତ୍ୟବାଦୀ ।

କବିବର ରାଧାନାଥ ରାୟ ସେତେବେଳେ ଓଡ଼ିଶା ଶିକ୍ଷା ବିଭାଗର ଇନ୍ସପେକ୍ଟର । ଏହା ଜଗତକୁ ସୃଷ୍ଟି ବଡ଼ କଥା । ଓଡ଼ିଆ ପାଠ୍ୟପୁସ୍ତକ ମାନ ଅଧିକାଂଶ ତାଙ୍କର ପ୍ରଣୀତ । ତାଙ୍କର କାବ୍ୟ କବିତା ଓଡ଼ିଆ ଭାଷାରେ ସେତେବେଳେ ଅତି ପ୍ରସିଦ୍ଧ । ସମଗ୍ର ଓଡ଼ିଶାରେ ମଧ୍ୟ ତାଙ୍କର ପାଣ୍ଡିତ୍ୟ ଓ କବି ପ୍ରତିଭା ପ୍ରଶଂସିତ । ତାଙ୍କ ଭକ୍ତମାନେ କହି ବୁଲିଲେ ରାଧାନାଥଙ୍କ କବିତ୍ୱ

ଉପେନ୍ଦ୍ର ଭଞ୍ଜ ପ୍ରଭୃତିଙ୍କ ଠାରୁ ଉତ୍କୃଷ୍ଟ । ଦାନେଲ ପ୍ରତିପକ୍ଷ କହୁଲେ ନା ଏହା ହୋଇ ନ ପାରେ । ଏହି ଦୁଇ ଦଳ ସେ ଯୁଗରେ ନିଜ ନିଜର ମତ ପ୍ରକାଶ କଲେ ନାନାଦି ପଦ୍ୟ ଗଦ୍ୟ ପ୍ରବନ୍ଧ ଲେଖି । ସେତେ-ବେଳେ ବାମଣ୍ଡାରୁ ଖଣ୍ଡିଏ ସାହିତ୍ୟ ପତ୍ରିକା ବାହାରୁଥିଲା । ତାହାର ନାମ ଦେଉଛୁ ବକୁଳ । ଏହି ପତ୍ରିକାରେ ରାଧାନାଥଙ୍କ ସପକ୍ଷ ଲେଖା ବହୁତ ଛାପା ହେଉଥିଲା । ଏ ସବୁ ଲେଖାର ପ୍ରତିବାଦ କରି କଟକରୁ ବାହାରୁଥିଲା ଇନ୍ଦ୍ରଧନୁ ।

୧୮୯୨ରେ ଉପେନ୍ଦ୍ର ଭଞ୍ଜଙ୍କ କେତେ ଖଣ୍ଡି ବହି ସ୍କୁଲ ପୁରସ୍କାର ରୂପେ ପିଲଙ୍କୁ ଦିଆ ଯାଇଥିଲା । ଏହା ଅନୁଚିତ ବୋଲି ମୟୂରଭଞ୍ଜରୁ ପ୍ରକାଶିତ ଉତ୍କଳପ୍ରଭା ପତ୍ରିକାରେ ଏକ ପ୍ରେରିତ ପତ୍ର ବାହାରିଲା । ସ୍ୱର୍ଗୀୟ ଗୌରୀଶଙ୍କର ଭଞ୍ଜ ଭକ୍ତ ଥିଲେ । ଦୀପିକା ଏହାର ପ୍ରତିବାଦ କଲା । ଦୀପିକାର ଲେଖାକୁ ଖଣ୍ଡନ କଲା ବାମଣ୍ଡାର ହିତୈଷିଣୀ । ଏମିତି ବାକ୍ ଯୁଦ୍ଧ ଚାଲିଥିଲା ବେଳେ ବକୁଳ ଓ ଇନ୍ଦ୍ରଧନୁ ପତ୍ରିକା ବାହାରି ଥିଲା । ଇନ୍ଦ୍ରଧନୁ ସପକ୍ଷରେ ଥିଲେ ଗୌରୀଶଙ୍କର, ଗୋପାଳବଲ୍ଲଭ ଦାସ, ଦାମୋଦର ପଟ୍ଟନାୟକ ଓ ସୁଦାମଚରଣ ନାୟକ ଏବଂ ବକୁଳ ପକ୍ଷରେ ଥିଲେ ଲାଲ ରାମନାରାୟଣ ରାୟ, ନୀଳମଣି ବିଦ୍ୟାରତ୍ନ, ବାମଣ୍ଡା ରାଜା ସୁଢଳଦେବ, ବିଶ୍ୱନାଥ କର, ଚନ୍ଦ୍ରମୋହନ ମହାରଣା ପ୍ରଭୃତି । ଏହି ସାହିତ୍ୟ ଯୁଦ୍ଧରେ ମନୋବ୍ୟଥା ପାଇ ମଧୁସୂଦନ ରାଓ ଭଣ୍ଡରସାୟନ କାବ୍ୟ ଲେଖିଥିଲେ । ଏହି ଯୁଦ୍ଧର ପରିଣତି ହେଲା ଭଞ୍ଜ ବଡ଼ କି ରାଧାନାଥ ବଡ଼ ?

ଗୋପବନ୍ଧୁ ପୁରୀ ଜିଲା ସ୍କୁଲରେ ୪ର୍ଥ ଶ୍ରେଣୀରେ ପଢୁଥିବା ବେଳେ ରାଧାନାଥଙ୍କୁ ଆକ୍ଷେପ କରି ଏକ କବିତା ଲେଖିଥିଲେ । ଏହି କବିତାଟି ନାମ ନ ଦେଇ ଇନ୍ଦ୍ରଧନୁରେ ଛପାଇଥିଲେ ।

ରାଧାନାଥ ବାବୁ ଅନୁସନ୍ଧାନ କରି ବୁଝିଲେ ଯେ ପୁରୀ ଜିଲା ସ୍କୁଲର କୌଣସି ଛାତ୍ର ଏହା ଲେଖିଅଛି । ସେ ପୁରୀ ସ୍କୁଲ ପରିଦର୍ଶନ କରିବାକୁ ଆସି ଜାଣିପାରିଲେ ଯେ ୪ର୍ଥ ଶ୍ରେଣୀର ଛାତ୍ର ଗୋପବନ୍ଧୁ ଏହା ଲେଖିଅଛନ୍ତି । ଗୋପବନ୍ଧୁଙ୍କୁ ଡାକି ପଚାରିଲେ । ଗୋପବନ୍ଧୁ ନିଜ ଦୋଷ ନ ଘୋଡ଼ାଇ ନିର୍ଭୀକ ଭାବରେ ଲେଖିଥିବା କଥା ସ୍ୱୀକାର କଲେ । ଏଥିରେ ରାଧାନାଥ ଅବଶ୍ୟ ମର୍ମାହତ ହୋଇଥିଲେ । ତଥାପି ଅଧିକ କିଛି କହୁ ନ ଥିଲେ । ତେବେ ହେଡ୍ ମାଷ୍ଟର ମହାଶୟ ଅତିଶୟ ରାଗିଯାଇ ତାଙ୍କର ବୃତ୍ତି ଟଙ୍କା ବର୍ଷଟିଏ କାଟି ଦେଇଥିଲେ । ଏହା ୧୮୯୩ ଖ୍ରୀଷ୍ଟାବ୍ଦର ଘଟଣା ।

ପୁରୀ ଜିଲା ସ୍କୁଲରେ ପଢୁଥିଲା ବେଳେ ଗୋପବନ୍ଧୁ ନିଜର ପିତୃବନ୍ଧୁ ମୁକ୍ତାର ରାମଚନ୍ଦ୍ର ଦାସଙ୍କ ସଂସ୍ପର୍ଶରେ ଆସିଥିଲେ । ପୁରୀରେ ସେତେବେଳେ ଜାତୀୟତା ଏବଂ ଦେଶ ସେବାର ଧ୍ୱଜାଧାରୀ ଥିଲେ ଏହି ରାମଚନ୍ଦ୍ର ଦାସ । ଏହାଙ୍କ ଘର ଥିଲା ପୁରୀ ଜିଲା ଭିଙ୍ଗାରପୁର ଗ୍ରାମ । ଏଠିକି ପୁରୀ ଧୋଇଆ ଅଞ୍ଚଳ ବୋଲି ଫସଲ ହାନି ପ୍ରାୟ ଘଟୁଥାଏ । ତା ଉପରକୁ ରଥ ଯାତ୍ରା ବେଳକୁ ହଇଜା ବେମାରି ଭୟଙ୍କର ହୋଇ ଉଠେ । ଏହା ଉପରକୁ ଖରାଦିନେ ଜଳାଭାବରୁ ଘରପୋଡ଼ି ସାଙ୍ଘାତିକ ହୋଇଥାଏ । ମୁକ୍ତାର ରାମଚନ୍ଦ୍ର ଦାସ ଏ ସବୁର ପ୍ରତିକାର ପାଇଁ କିଛି ନା କିଛି କାମ କରୁଥାନ୍ତି । ତାଙ୍କର ଏହି ସେବା ପ୍ରବୃତ୍ତି ଏବଂ ଦେଶ ପ୍ରେମ କେତେଗୁଡ଼ିଏ ଯୁବକଙ୍କ ପ୍ରାଣ ଆକର୍ଷଣ କରିବା ସ୍ୱାଭାବିକ । ରାମଚନ୍ଦ୍ରଙ୍କର ଏହି ଆଦର୍ଶ ଗୋପବନ୍ଧୁଙ୍କୁ ଖୁବ ଅନୁପ୍ରାଣିତ କରିଥିଲା ଏବଂ ସେ ମଧ୍ୟ ଗୋପବନ୍ଧୁଙ୍କର ନିର୍ଭୀକତା ଦେଖି ଖୁବ ସନ୍ତୁଷ୍ଟ ହୋଇଥିଲେ । ତାଙ୍କର କଥାରେ ଗୋପବନ୍ଧୁ ସଭା ସମିତିରେ

ବକ୍ତୃତା ଦେବା ଆରମ୍ଭ କରିଥିଲେ ଏବଂ ତାଙ୍କର ପ୍ରେରଣାରେ ସଙ୍ଗୀ ଯୁବକମାନଙ୍କୁ ନେଇ ସ୍ୱେଚ୍ଛାସେବକ ଦଳ ଗଢ଼ିଥିଲେ ।

ଏହାପରେ ଭଦ୍ରକର ମୁକ୍ତାର ରାମଚନ୍ଦ୍ର ଦାଶଙ୍କ ସଙ୍ଗରେ ଗୋପବନ୍ଧୁଙ୍କର ଘନିଷ୍ଠ ସମ୍ପର୍କ ସ୍ଥାପିତ ହୋଇଥିଲା ଏବଂ ପ୍ରତିଦିନ କିଛି ସମୟ କେତେ ଜଣ ସହପାଠୀଙ୍କୁ ସଙ୍ଗରେ ନେଇ ଗୋପବନ୍ଧୁ ତାଙ୍କ ଘରକୁ ଯାଉଥିଲେ । ସେଠାରେ ସେମାନେ ଜାତୀୟତା, ସମାଜ ସେବା କରିବା ନିମିତ୍ତ ନାନା ଆଲୋଚନା ମଧ୍ୟ କରୁଥିଲେ ।

ଏତେବେଳେ ଇଂରେଜୀ ପାଠୁଆ ଓଡ଼ିଆ ଅତି ଅଳ୍ପ ସଂଖ୍ୟକ ଥିଲେ । ସୁତରାଂ ଏମ୍. ଏ. ଅବା ବି. ଏ. ଯେ କେହି ପାଶ୍ କରିବ ତାହା ପାଇଁ ଡେପୁଟି, ମୁନସିଫି କିମ୍ବା କଲେଜ ପ୍ରଫେସରୀ ଅଥବା ଅନ୍ୟ ବଡ଼ ବଡ଼ ସରକାରୀ କାମ ଥୁଆ ଥିଲା । ଚାକିରି ଖୋଜିବା ଦୂରରେ ଥାଉ ସରକାର ପକ୍ଷରୁ ଚାକିରି ଡାକି ଡାକି ଦିଆ ଯାଉଥିଲା ।

ଥରେ ରାମଚନ୍ଦ୍ର ଦାଶ ପିଲାଙ୍କୁ ପଚାରିଲେ ଯେ ସେମାନେ ପାଠ ପଢ଼ି ବଡ଼ ହେଲେ କଅଣ କରିବାକୁ ଆଶା କରୁଛନ୍ତି ? ଯେଉଁ କେତେ ଜଣ ଥିଲେ ଗୋପବନ୍ଧୁଙ୍କୁ ଛାଡ଼ି ବାକୀ ସମସ୍ତେ ବଡ଼ ବଡ଼ ସରକାରୀ ହାକିମ ହେବାକୁ ଆଶା କରନ୍ତି ବୋଲି କହିଲେ । ଗୋପବନ୍ଧୁ କିନ୍ତୁ ଚାକିରି ନ କରି ସ୍ୱାଧୀନ ଭାବରେ ଓକିଲାତି କରିବେ ଏବଂ ଦେଶର ସେବା କରିବେ ବୋଲି ପ୍ରକାଶ କରିଥିଲେ ।

ରାମଚନ୍ଦ୍ର ଦାଶ ନିଜେ ଜାତୀୟତାବାଦୀ ଲୋକ ଥିବାରୁ ନିଜ ଘରେ କେତେଗୁଡ଼ିଏ ଭଲ ଭଲ ବହି ରଖିଥିଲେ ।

ନବ୍ୟ ଇଟାଲୀର ମନ୍ତ୍ରଗୁରୁ ମାଜିନି ଏବଂ ଗ୍ୟାରିବଲଡ଼ୀଙ୍କ ଜୀବନୀ, ଟଡ୍ ସାହେବଙ୍କ ରାଜସ୍ଥାନ ଇତିହାସ, ସଖାରାମ ଦେଉସ୍କରଙ୍କର ଦେଶର କଥା ପ୍ରଭୃତି ବଙ୍ଗଳା ଓ ଇଂରେଜୀ ବହି ସେତେବେଳେ ତରୁଣ ସମ୍ପ୍ରଦାୟର ବଡ଼ ପ୍ରିୟ ଗ୍ରନ୍ଥ ଥିଲା । ଗୋପବନ୍ଧୁ ଏହି ସବୁ ପଢ଼ି ପଢ଼ି ଅତି ମାତ୍ରାରେ ପ୍ରଭାବିତ ହୋଇଥିଲେ । ସବୁଠାରୁ ଅବନତ ଓଡ଼ିଶାର ଦୁଃଖ ଦୁର୍ଗତି ତାଙ୍କ ପ୍ରାଣକୁ ବିକଳ କରିଥିଲା ।

ମୁକ୍ତାର ରାମଚନ୍ଦ୍ରଙ୍କ ଘରେ ସଙ୍ଗୀମାନଙ୍କୁ ନେଇ ଗୋପବନ୍ଧୁ ପ୍ରାୟ ପ୍ରତ୍ୟହ ରାଜନୀତି ଓ ସମାଜନୀତି ଆଲୋଚନା କରୁଥିଲେ । ଓଡ଼ିଶା ପୁଣି କିପରି ବଡ଼ ହେବ, ଏ କଥା ସେ ବହୁତ ଭାବୁଥିଲେ ଏବଂ ନିଜର ଚିନ୍ତାକୁ ଦିନେ ଦିନେ ଅତି ପ୍ରାଞ୍ଜଳ ଭାବରେ ବୁଝାଉଥିଲେ । ରାମଚନ୍ଦ୍ର ବାବୁ ତାଙ୍କର ଏପରି ଶକ୍ତି ଦେଖି ମୁଗ୍ଧ ହୋଇଥିଲେ ଏବଂ ସ୍କୁଲର ଶିକ୍ଷକମାନେ ମଧ୍ୟ ତାଙ୍କୁ ସ୍ନେହ କରୁଥିଲେ । ଶିକ୍ଷକ ମଧ୍ୟରୁ ବାବୁ ହରିସିଂହ ମିଶ୍ର ତାଙ୍କର ଦୀର୍ଘକାଳ ସହକର୍ମୀ ମଧ୍ୟ ହୋଇଥିଲେ । ନାନାଦି ବିଦେଶୀ ଲେଖକ ମାନଙ୍କର ସ୍ୱଦେଶପ୍ରେମମୂଳକ ବକ୍ତୃତାମାନ ପଢ଼ି ଗୋପବନ୍ଧୁ ବକ୍ତୃତା ଅଭ୍ୟାସ କରିଥିଲେ ଏବଂ ବହୁ ବିଷୟବସ୍ତୁ ମିଶାଇ ଏକାବେଳେ ସବୁ କଥା ଅତି ଚମତ୍କାର ଭାବରେ କହି ପାରୁଥିଲେ । ସେ ନିଜେ ପିଲା ଦିନୁ ଅତ୍ୟଧିକ ଭାବପ୍ରବଣ ଥିବାରୁ ଲୋକଙ୍କର ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣନା କଲାବେଳେ କୋହ ସମ୍ଭାଳି ପାରୁ ନ ଥିଲେ । ତାଙ୍କ ବକ୍ତୃତାର ଶ୍ରୋତାମାନେ ମଧ୍ୟ ତାଙ୍କ କଥାରେ ତନ୍ମୟ ହୋଇ କାନ୍ଦି ପକାଉଥିଲେ । ସେ ଯେମିତି ଭାବପ୍ରବଣ ସେମିତି ରହସ୍ୟପ୍ରିୟ ମଧ୍ୟ ଥିଲେ ଏବଂ ରହସ୍ୟଜନକ କଥା ମଧ୍ୟ କହି ଶ୍ରୋତାମାନଙ୍କୁ ହସାଇ ପାରୁଥିଲେ ।

ପୁରୀ ଜିଲ୍ଲାସ୍କୁଲର ଷଷ୍ଠ ଶ୍ରେଣୀରେ ପଢୁଥିଲା ବେଳେ ୧୮୯୭ ଖ୍ରୀଷ୍ଟାବ୍ଦରେ ଉପର ଶ୍ରେଣୀର ଛାତ୍ର ରଘୁନାଥ ରାଓ ଓ

ସାମ୍ବାଦିକ ହରିହର ଦାସଙ୍କ ସହିତ ତାଙ୍କର ଅତ୍ୟନ୍ତ ଘନିଷ୍ଠତା ଜନ୍ମିଥିଲା । ଏ ଦୁହେଁ ତାଙ୍କ ଠାରୁ ବୟସରେ ବଡ଼ ହେଲେ ମଧ୍ୟ ତାଙ୍କର ଅନୁଚର ହୋଇ ପଡ଼ିଥିଲେ । ଏହିମାନଙ୍କ ସହଯୋଗରେ ସେ ଗୋଟିଏ କ୍ଷୁଦ୍ର ସେବା ଦଳ ଗଠନ କରିଥିଲେ ଏବଂ ଆଗ୍ରହୀ ହରିହର ଦାଶ ଏଥିରେ ବେଶ୍ ସେବାଦଳର କର୍ମୀ ହିସାବରେ ଖୁବ୍ ଭଲ କାମ କରିଥିଲେ ।

ପୂର୍ବରୁ ପୁରୀରେ ରଥଯାତ୍ରା ସମୟର ହଇଜା କଥା କୁହାଯାଇଛି । ଏହି ବେମାରି ପାଇଁ ସେତେବେଳେ କୌଣସି ଚିକିତ୍ସାର ବ୍ୟବସ୍ଥା ନ ଥିଲା । ପେଣ୍ଠୁମାନେ ବାଟେ କଡ଼ରେ ପଡ଼ି ମରୁଥିଲେ ତାଙ୍କ ଦେଖିବାର ପାଇଁ ମଧ୍ୟ କେହି ବାହାରୁ ନ ଥିଲେ । ସରକାରଙ୍କ ପକ୍ଷରୁ ମଧ୍ୟ ସେପରି କିଛି ବ୍ୟବସ୍ଥା ହୋଇ ନ ଥିଲା । ଏମିତି ଥରେ ରଥଯାତ୍ରା ବେଳେ ଗୋପବନ୍ଧୁ ନିଜର ସଙ୍ଗୀମାନଙ୍କୁ ନେଇ ବହୁ ରୋଗୀଙ୍କ ସେବା ଯତ୍ନ କରିଥିଲେ, ଡାକ୍ତର ଖାନାକୁ ବହି ନେଇଥିଲେ ଏବଂ ମୃତବ୍ୟକ୍ତିଙ୍କ ଶବ ସତ୍କାର କରାଇଥିଲେ । ବ୍ରାହ୍ମଣ ପିଲା ଗୋପବନ୍ଧୁଙ୍କର ଏଭଳି କାମକୁ ବୁଢା ବୁଢା ରକ୍ଷଣଶୀଳ ଲୋକେ ନାପସନ୍ଦ କଲେ ମଧ୍ୟ ଶତ ଶତ ସହରବାସୀ ବହୁ ପ୍ରଶଂସା କରିଥିଲେ । ଖାଲି ସେବା ସୁଶ୍ରୁଷା କରି ଗୋପବନ୍ଧୁ ଶାନ୍ତ ନ ଥିଲେ । ଏହି ହଇଜା ଭୟାନକ ଅବସ୍ଥାରେ ସରକାରଙ୍କ ଉଦାସୀନତା ସମ୍ବନ୍ଧରେ ସେ କଲିକତା ଷ୍ଟେଟ୍‌ସମ୍ୟାନ କାଗଜରେ ଜୀବନ୍ତ ବର୍ଣ୍ଣନା ଛପାଇଥିଲେ । ଏ କାମରେ ତାଙ୍କୁ ପୂର୍ଣ୍ଣ ସାହାଯ୍ୟ କରିଥିଲେ ବାବୁ ହରିହର ଦାସ । ସେ ସେତେବେଳେ ଉକ୍ତ ପତ୍ରିକାର ପୁରୀ ପ୍ରତିନିଧି ଥିଲେ । ଉକ୍ତ ସମ୍ବାଦ ପ୍ରକାଶ ପାଇବାରୁ ବଡ ହାକିମ ମାନଙ୍କର ନିଦ ଭାଙ୍ଗିଲା ଏବଂ ପୁରୀର ଡାକ୍ତର ସାହେବ ନିଜର ଦୋଷ ଧରା ପଡ଼ିଲା ଦେଖି ଭୟରେ ରଗି ଗଲେ । ସାହେବଙ୍କ

ନାମ ହେଉଛନ୍ତି ମିଷ୍ଟର ଗ୍ରିର୍ଲସ ବ୍ୟାଙ୍କ । ସେ ସମ୍ବାଦ ଦାତାଙ୍କୁ ଖୋଲା ପ୍ରକାଶ୍ୟ ଭାବରେ ମାଡ଼ ଦେଇଥିଲେ ଏବଂ ଶେଷକୁ ଫୌଜଦାରୀ ମକଦ୍ଦମାରେ ଆସାମୀ ହୋଇ କ୍ଷମା ମଧ୍ୟ ମାଗିଥିଲେ ।

ତୁଳସୀ ଦୁଇ ପଦରୁ ବାସିଲା ପର ଗୋପବନ୍ଧୁଙ୍କର ଗୃହ ସ୍ଥିତ ଅବସ୍ଥାରୁ କ୍ରମେ ସଚ୍ଛଳ ହେବାକୁ ଲାଗିଲା । ୧୮୯୯ ଖ୍ରୀଷ୍ଟାବ୍ଦରେ ଗୋପବନ୍ଧୁ ଏଣ୍ଟ୍ରାନ୍ସ ପାଶ କଲେ, କିନ୍ତୁ ଏହି ବର୍ଷ ତାଙ୍କର ପିତାଙ୍କର ମୃତ୍ୟୁ ଘଟିଲା । ପରେ ବଡ଼ ଭାଇ ନାରାୟଣ ଦାଶ ଘର କାମ ସବୁ ଚଳାଚଳ କରୁଥିଲେ । ଗୋପବନ୍ଧୁଙ୍କର ପାଠ ପଢ଼ା ଏହି ଠାରୁ ଶେଷ ହୋଇ ଯାଇଥାନ୍ତା; ମାତ୍ର ବଡ଼ ଭାଇ କଟକ କଲେଜରେ ପଢ଼ିବାର ସବୁ ଖର୍ଚ୍ଚ ଯୋଗାଇବାକୁ କହିବାରୁ ସେ ଆସି କଟକ ରେଭେନ୍ସା କଲେଜରେ ନାମ ଲେଖାଇଲେ । ଏ ସମୟରେ କଲେଜରେ ଅନ୍ୟ ଛାତ୍ରମାନଙ୍କ ମଧ୍ୟରେ ତାଙ୍କର ପ୍ରିୟ ସହପାଠୀ ଓ ବୟସ୍ୟ ହୋଇଥିଲେ ବାବୁ ବ୍ରଜସୁନ୍ଦର ଦାସ । ତାଙ୍କ ସହିତ ମିଶି ଗୋପବନ୍ଧୁ କଲେଜରେ ଗୋଟିଏ ଛାତ୍ର ସମିତି ମଧ୍ୟ ଗଢ଼ିଥିଲେ ଏବଂ ସମିତି ଦ୍ୱାରା ଅନେକଗୁଡ଼ିଏ ଜାତୀୟ କାର୍ଯ୍ୟ ମଧ୍ୟ ସାଧିତ ହୋଇଥିଲା ।

ଗୋପବନ୍ଧୁ ଶାସନୀ ବ୍ରାହ୍ମଣ କୁଳରେ ଜନ୍ମିଥିଲେ ବୋଲି କୁଳପ୍ରଥା ଅନୁସାରେ ୧୨ ବର୍ଷ ବୟସ ବେଳେ ବିବାହ କରିବାକୁ ବାଧ୍ୟ ହୋଇଥିଲେ । ତାଙ୍କର ସ୍ତ୍ରୀଙ୍କର ନାମ ଥିଲା ମୋତ । ୧୮୯୭ ଖ୍ରୀଷ୍ଟାବ୍ଦରେ ଏହାଙ୍କ ଗର୍ଭରୁ ଗୋପବନ୍ଧୁଙ୍କର ଏକ ପୁତ୍ର ଜନ୍ମିଥିଲା । ସେହି ପୁତ୍ରଟି କିନ୍ତୁ ଗୋପବନ୍ଧୁ ବି. ଏ. ପରୀକ୍ଷା ଦେବା ପୂର୍ବରୁ ମରି ଯାଇଥିଲା । ପୁତ୍ର ମୃତ୍ୟୁ ଯୋଗୁଁ ସେ ଏତେ ଦୂର ମନୋବ୍ୟଥା ଭୋଗିଥିଲେ ଯେ ସେ ବର୍ଷ ପଢ଼ା ପଢ଼ିରେ ମନଯୋଗ

ଦେଇ ନ ପାରି ବି. ଏ. ପରୀକ୍ଷାରେ ସଫଳ ହୋଇଥିଲେ । ପରେ ବି. ଏଲ୍. ପରୀକ୍ଷା ଦେଇ ନୀଳଗିରିକୁ ଶିକ୍ଷକ ହୋଇ ଯାଇଥିଲେ । ଏହା ତାଙ୍କର ପ୍ରଥମ କର୍ମଜୀବନ । ନୀଳଗିରି ରାଜା ସେତେବେଳେ ନିଜ ଭାଇ ମୟୂରଭଞ୍ଜ ରାଜାଙ୍କ ଅନୁକରଣରେ ନିଜ ଗଡ଼ରେ ଗୋଟିଏ ହାଇସ୍କୁଲ ଆରମ୍ଭ କରିଥାନ୍ତି । ଗୋପବନ୍ଧୁ ମଧ୍ୟ ଓଡ଼ିଶାରେ ଶିକ୍ଷା ପ୍ରଚାର ବ୍ରତ ନେଇ ଥାଆନ୍ତି । ଅତଏବ ସେ ଶିକ୍ଷକତା ଗ୍ରହଣ କରି ମନପ୍ରାଣ ଦେଇ କାମରେ ଲାଗି ଯାଇଥିଲେ । ଦୈବଦୁର୍ବିପାକରୁ ଏତିକି ବେଳେ ତାଙ୍କର ସ୍ତ୍ରୀ ବିୟୋଗ ଘଟିଥିଲା । ନୀଳଗିରିରେ ସେ ସହକାରୀ ଶିକ୍ଷକ ରୂପେ ପାଇଥାନ୍ତି ଅଗ୍ରଜ ହରିହର ଦାଶଙ୍କୁ । ହରିହର ବାବୁ ବି. ଏ. ପାଶ ନ କଲେ ମଧ୍ୟ ଖୁବ ମେଧାବୀ ଛାତ୍ର ଥିଲେ ଏବଂ ପ୍ରଥମରେ ପୁରୀ ଜିଲା ସ୍କୁଲରେ ଅସ୍ଥାୟୀ ଶିକ୍ଷକ ହୋଇଥିଲେ । ଗୋପବନ୍ଧୁଙ୍କ କଥାମତେ ସେ ଉକ୍ତ କାମ ଛାଡ଼ି ଦେଇ ନୀଳଗିରିକୁ ଗୃହୀର କରିବାକୁ ଯାଇଥିଲେ ।

ରେଭେନ୍ସା କଲେଜରେ ପଢ଼ା ଆରମ୍ଭ କରି ଗୋପବନ୍ଧୁ ଯେଉଁ ଛାତ୍ର ସମିତି ଆରମ୍ଭ କରିଥିଲେ, ତାହାର ନାମ ଥିଲା କର୍ତ୍ତବ୍ୟ-ବୋଧିନୀ । ଏହି ସମିତି ଉଦ୍ୟୋଗରେ ଶିକ୍ଷା ବିଭାଗ ପରୀକ୍ଷା ବେଳେ ଓଡ଼ିଆରୁ ଗଦ୍ୟାଂଶକୁ ଇଂରେଜୀ ଅନୁବାଦ ହେବ ବୋଲି ଆଦେଶ ଦେଇଥିଲେ । ଏହା ପୂର୍ବରୁ ବଙ୍ଗାଳି ହାକିମମାନଙ୍କ ପ୍ରଭାବରେ ବଙ୍ଗଳାରୁହିଁ ଓଡ଼ିଆ ଛାତ୍ରମାନେ ଏହା କରୁଥିଲେ । କର୍ତ୍ତବ୍ୟବୋଧିନୀର ଏହି ଉଦ୍ୟମକୁ ଗୌରୀଶଙ୍କର ରାୟ ମଧ୍ୟ ଉତ୍କଳ ଦୀପିକାରେ ସମର୍ଥନ କରିଥିଲେ ।

ପିଲାଦିନୁ ଗୋପବନ୍ଧୁଙ୍କର କବିତା ଲେଖା ଶକ୍ତି ଜନ୍ମିଥିଲା ଏବଂ ସେ ଅନେକ ସାନ ସାନ କବିତା ଅତି ସୁନ୍ଦର ଓ ସରଳ

ଭାବରେ ଲେଖିଥିଲେ । କଲେଜରେ ପଢ଼ିଲାବେଳେ ମଧ୍ୟ ଅନେକ କବିତା ଲେଖିଥିଲେ । ସେ ସବୁ ପୁସ୍ତିକା ଆକାରରେ "ଅବକାଶ ଚିନ୍ତା" ନାମରେ ଛପା ମଧ୍ୟ ହୋଇଥିଲା ।

ମାଇକେଲ ମଧୁସୂଦନ ସର୍ବ ପ୍ରଥମ ଇଂରେଜୀ କାବ୍ୟ ପଦ୍ଧତି ଅନୁସାରେ ଅମିତ୍ରାକ୍ଷର ଛନ୍ଦ ଭାରତରେ ପ୍ରଚଳନ କରିଥିଲେ । ତାଙ୍କ ପରେ ପଣ୍ଡିତ ଭବବିଭୂତି ରାଧାନାଥ ୧୮ ଅଧ୍ୟାୟବିଶିଷ୍ଟ ମହାଯାତ୍ରା କାବ୍ୟ ଓଡ଼ିଆରେ ଅମିତ୍ରାକ୍ଷର ଛନ୍ଦରେ ଲେଖିଥିଲେ ।

ଗୋପବନ୍ଧୁ କଲେଜର ପ୍ରଥମ ଶ୍ରେଣୀ ଛାତ୍ର ଥିଲାବେଳେ ମହାଯାତ୍ରା ପରି କଳ୍ପଲତା ନାମକ ଖଣ୍ଡିଏ କାବ୍ୟ ଲେଖିଥିଲେ ମାତ୍ର ଓଡ଼ିଶାର ଦୁର୍ଭାଗ୍ୟକୁ ସେ ଖଣ୍ଡି ହଜି ଯାଇଅଛି । ଅସହଯୋଗ ଆନ୍ଦୋଳନ ପରେ ବାଲେଶ୍ୱରଠାରେ ଥରେ ହିନ୍ଦୁ ମୁସଲମାନ ବିବାଦ ଆରମ୍ଭ ହୋଇଥିଲା । ସେହି ବିବାଦ ସମାଧାନ ପାଇଁ ଲେଖକ ତାଙ୍କୁ ପୁରୀ ଠାରୁ ବାଲେଶ୍ୱର ନେଇ ଯାଉଥିଲା । ହଠାତ୍ କଟକ ଷ୍ଟେସନରେ ଅଳ୍ପ କିଛି ଦହି ପିଇ ପିଇ ସେ ହଠାତ୍ ବିକଳ ହୋଇ ପଡ଼ିଲେ । କାରଣ ପଚାରିବାରୁ କହିଲେ "ଏମିତି ଦିନେ ଠିକ୍ ଏହି କଟକରେ ତାଙ୍କର ପ୍ରଥମ ରଚିତ କାବ୍ୟ ଟିଣ ବାକ୍ସ ସହିତ ହଜି ଯାଇଥିଲା । ୧୯୦୦ ଖ୍ରୀଷ୍ଟାବ୍ଦରୁ ୧୯୨୦ ଯାଏ ସେ ଆଉ କାବ୍ୟ କବିତା ଲେଖିବାକୁ ମନ ବଳାଇ ନ ଥିଲେ । ଏହି ସମୟରେ ଯାହା ଲେଖା ଲେଖି କରିଥିଲେ ତାହା କେବଳ ରାଜନୈତିକ ପ୍ରବନ୍ଧ ଓ ସମାଲୋଚନା; କବିତା ଲେଖିବାର ସୁଯୋଗ ମଧ୍ୟ ତାଙ୍କୁ ଆଉ ମିଳି ନଥିଲା ।

୧୯୦୩ ଖ୍ରୀଷ୍ଟାବ୍ଦରୁ ମଧୁ ବାବୁ କଲିକତାରୁ ମୁକ୍ତ ହୋଇ ଆସି କଟକରେ ଓକିଲତି ଆରମ୍ଭ କରିଥାନ୍ତି । ମଧୁ ବାବୁ ଅସାଧାରଣ ଜ୍ଞାନୀ,

ପଣ୍ଡିତ ଓ ବକ୍ତା । ୧୯୦୩ ଉତ୍କଳ ସମ୍ମିଳନୀକୁ ପ୍ରତିଷ୍ଠା କରି ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରୀକରଣ ଆନ୍ଦୋଳନ ଆରମ୍ଭ କରିଥିଲେ ଏବଂ ଛାତ୍ରମାନଙ୍କୁ ଦେଶପ୍ରେମି କରିବା ନିମିତ୍ତ ଉତ୍କଳ ଯୁବକ ସମିତି ଗଢ଼ିଥିଲେ । ପୁରୀରେ ଥିଲାବେଳେ ଗୋପବନ୍ଧୁ ପିଲାଦିନେ ଗଢ଼ିଥିଲେ ପୁରୀ ବ୍ରାହ୍ମଣ ସମିତି । ବର୍ତ୍ତମାନ ସେ ମନ ମୁତାବକ ଅନୁଷ୍ଠାନ ଦେଖି ଉକ୍ତ ଉତ୍କଳ ଯୁବକ ସମିତିରେ ଯୋଗ ଦେଲେ ଏବଂ ମଧୁବାବୁଙ୍କ କଥାରେ ତହିଁର ସମ୍ପାଦକ ମଧ୍ୟ ହେଲେ । ଅଥଚ ଉତ୍କଳ ସମ୍ମିଳନୀରେ ମଧୁବାବୁଙ୍କ ଅଗତ ଦେଶ ମିଶ୍ରଣ ପ୍ରସ୍ତାବକୁ ସଂଶୋଧନ କରିବା ପାଇଁ ଗୋପବନ୍ଧୁ ଦୃଢ଼ ଭାବରେ ଚେଷ୍ଟା କରିଥିଲେ । ମଧୁ ବାବୁ କହୁଥିଲେ ସବୁ ଓଡ଼ିଆଭାଷୀ ଅଞ୍ଚଳ ଏକାଠି ହୋଇ ବଙ୍ଗଳା ଅଧୀନରେ ରହୁ, ଗୋପବନ୍ଧୁ କହୁଥିଲେ ତାହା ମଧ୍ୟପ୍ରଦେଶ ଅଧୀନରେ ରହୁ । ଏହି ଯୁକ୍ତି ତର୍କରେ ମଧୁ ବାବୁଙ୍କ ପରି ଝାଣ୍ଟୁଆ ନେତା ମଧ୍ୟ ଶେଷକୁ ପରାଜୟ ସ୍ୱୀକାର କରିଥିଲେ ।

୧୯୦୧ ଖ୍ରୀଷ୍ଟାବ୍ଦରେ ଗୋପବନ୍ଧୁ ଏଫ୍. ଏ. ପାଶ କରି ବି. ଏ ଶ୍ରେଣୀରେ ନାମ ଲେଖାଇଲେ ଏବଂ ବର୍ଷେ ଫେଲ୍ ହୋଇ ୧୯୦୪ରେ ବି.ଏ. ପାଶ କଲେ । ଏହା ପରେ ସେ ଓକିଲାତି ପଢ଼ା ଆରମ୍ଭ କରିଥିଲେ । ଏହି ସମୟରେ ତାଙ୍କର ଆର୍ଥିକ ଅବସ୍ଥା ଟିକିଏ ଅସ୍ୱଚ୍ଛଳ ହେବାରୁ ସେ ଦାଶରଥି ଓ ଗୋବିନ୍ଦ ଶୁରଦେଓ ଦୁଇ ଭାଇଙ୍କ ଗୃହ ଶିକ୍ଷକ ହୋଇଥିଲେ ଏବଂ ଏଥି ନିମିତ୍ତ ବେତନ ପାଉଥିଲେ ନୟାଗଡ଼ର ରାଜାସାହେବଙ୍କ ପାଖରୁ । ଏ କାମଟି କବିବର ରାଧାନାଥଙ୍କ ସୁପାରିଶ ଅନୁସାରେ ତାଙ୍କୁ ମିଳିଥିଲା । ଶୁରଦେଓ ଦୁଇ ଭାଇ କାଳୀ ଗଳିରେ ରହୁଥିଲେ ବୋଲି ଗୋପବନ୍ଧୁ କଲେଜ ବୋର୍ଡ଼ିଂ ଛାଡ଼ି କାଳୀ ଗଳିକୁ ଚାଲି ଆସିଲେ । ଏଠାରେ ପ୍ରତ୍ୟହ କବିବର

ରାଧାନାଥ ଓ ଉତ୍କଳର ମଧୁସୂଦନଙ୍କ ସାନ୍ନିଧ୍ୟ ଲାଭ ତାଙ୍କ ସୁପ୍ତ କବିତ୍ୱକୁ ପୁଣି ଜାଗ୍ରତ କରିଥିଲା ।

୧୯୦୫ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ଦେଶ ମିଶ୍ରଣ ଅନେକାଂଶରେ ସଫଳ ହେଲା ସତ; କିନ୍ତୁ ବଙ୍ଗଳା ଦୁଇ ଭାଗ ହେବାରୁ ଯେଉଁ ପ୍ରବଳ ସ୍ୱଦେଶୀ ଆନ୍ଦୋଳନ ଜାତ ହେଲା ଗୋପବନ୍ଧୁ ସେଥିରେ ମାତି ଉଠିଲେ ଏବଂ ପୁରୀ ଜିଲାର ଗାଁ ଗାଁ ବୁଲି ସ୍ୱଦେଶୀନୀତି ପ୍ରଚାର କଲେ । ଏତେବେଳକୁ ତାଙ୍କର ସହକର୍ମୀ ହୋଇଥାନ୍ତି ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, ହରିହର, କୃପାସିନ୍ଧୁ, ଅନନ୍ତ ମିଶ୍ର ପ୍ରଭୃତି । ଏମାନେ ସମସ୍ତେ ଆଜୀବନ ନିରାଡ଼ମ୍ବର ଜୀବନ ଯାପନ କରି ଦେଶ ସେବା କରିବାର ବ୍ରତ ଗ୍ରହଣ କରିଥିଲେ ।

ସ୍ୱଦେଶୀ ଆନ୍ଦୋଳନକୁ ଇଂରେଜ ସରକାର କଠୋର ଭାବରେ ଦମନ କରିବାକୁ ଲାଗିଲେ । ମୁସଲମାନ ସମ୍ପ୍ରଦାୟ ସରକାରଙ୍କ ସପକ୍ଷରେ ଗଲେ । ବିଦ୍ୟାଳୟର ପୁସ୍ତକରେ ଅନେକ କିଛି ପରିବର୍ତ୍ତନ କରାଗଲା ଏବଂ ସରକାରଙ୍କ ଦମନ ନୀତି ଫଳରେ ବଙ୍ଗଳାରେ ସନ୍ତ୍ରାସବାଦ ମୁଣ୍ଡ ଟେକିଲା । କଲିକତା ବିଶ୍ୱବିଦ୍ୟାଳୟରେ ସେତେବେଳକୁ ଭାଇସ୍‌ଚାନ୍‌ସେଲର ଥାଆନ୍ତି ସାର୍ ଗୁରୁଦାସ । ତାଙ୍କ ସହିତ ପୂର୍ବ ବଙ୍ଗର ଛୋଟଲାଟ ପାଠ୍ୟ ପୁସ୍ତକ ନେଇ ବିବାଦ କଲେ ଏବଂ ଶେଷକୁ ଗୁରୁବରଙ୍କୁ ଇସ୍ତଫା ଦେବାକୁ ଧମକ ଦେଲେ । ବଡ଼ଲାଟ ଲର୍ଡ଼ ମିଣ୍ଟୋ କିନ୍ତୁ ତାଙ୍କ ଇସ୍ତଫା ଗ୍ରହଣ କରି ନେବାରୁ ଫୁଲର ସାହେବ ବାଧ୍ୟ ହୋଇ ଆପଣା ଦେଶକୁ ବାହୁଡ଼ି ଗଲେ ।

କଟକରେ ଦେଢ଼ ବର୍ଷ ଓକିଲାତି ପଢ଼ି ଗୋପବନ୍ଧୁ ଶେଷ ପରୀକ୍ଷା ଦେବାକୁ କଲିକତା ଯାଇଥିଲେ । ସେଠାରେ

ବହୁବଜାରର ଗୋଟିଏ ଛାତ୍ରାବାସରେ ଗୋପବନ୍ଧୁ ଖର୍ଚ୍ଚ କମ୍ ପଡ଼ିବ ବୋଲି ସ୍ଥାନ ନେଇ ରହୁଥିଲେ । ଏହି ଛାତ୍ରାବାସରେ ପ୍ରାୟ ଶତାଧିକ ବିଭିନ୍ନ ପ୍ରଦେଶର କିରାଣୀ, କର୍ମଚାରୀ, ଛାତ୍ର ପ୍ରଭୃତି ରହୁଥାନ୍ତି । ଗୋପବନ୍ଧୁଙ୍କର ଦାନ୍ତଘଷା ଗାଧୁଆଠାରୁ ଆରମ୍ଭ କରି ଖିଆପିଆ ସବୁଥିରେ ଏକ ନିୟମପୂର ନୈଷ୍ଠିକତା ଦେଖି ଅନେକେ ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ ।

ସେତେବେଳେ ବଡ଼ବଜାରରେ ପ୍ରାୟ ୧୦ ହଜାର ଓଡ଼ିଆ ମୂଲ ଲାଗି ରହନ୍ତି ଏବଂ ଏଠି ସେଠି ଅତି ସଙ୍କୀର୍ଣ୍ଣ ଘରେ କଷ୍ଟରେ ରହୁଥାନ୍ତି । ଏହା ଉପରକୁ ତାଙ୍କ ପ୍ରତି ମାଲିକ ଓ ଅନ୍ୟ ସମସ୍ତେ ଅତ୍ୟନ୍ତ ତାଚ୍ଛଲ୍ୟ ବ୍ୟବହାର କରୁଥାନ୍ତି । ସେମାନଙ୍କର ଏହି ଦୁରବସ୍ଥା ଦେଖି ଗୋପବନ୍ଧୁଙ୍କର ପ୍ରାଣ ବଡ଼ ବିକଳ ହୋଇ ଉଠିଲା, ମାତ୍ର ସେ ତ ଅଳ୍ପ ଦିନ ପାଇଁ ପଢିବାକୁ ଯାଇଥିଲେ, ଏଣୁ ବାସ୍ତବ କିଛି କରି ପାରିଲେ ନାହିଁ । ସେହି ସବୁ ଓଡ଼ିଆ ପୁଣି ସଙ୍ଘବଦ୍ଧ ନ ଥିଲେ କିମ୍ବା ତାଙ୍କ ଭିତରେ ପାରସ୍ପରିକ ସହଯୋଗ ନ ଥିଲା । ବିଭିନ୍ନ ଜିଲ୍ଲା ଓ ଗ୍ରାମରୁ ଯାଇ ଥିବାରୁ ବରଂ ନିଜ ନିଜ ମଧ୍ୟରେ ସଙ୍କୀର୍ଣ୍ଣତା ରହୁଥିଲା । ଗୋପବନ୍ଧୁ ସେମାନଙ୍କୁ ସଂଘବଦ୍ଧ କରିବାର ଚେଷ୍ଟା କରି ସଫଳ-କାମ ହୋଇ ନ ଥିଲେ; ମାତ୍ର ଏ କଥା ସେ ଭୁଲି ପାରି ନ ଥିଲେ ।

କଲିକତାରେ ସେତେବେଳକୁ ଉତ୍କଳ ସମାଜ ନାମକ ଏକ କ୍ଷୁଦ୍ର ଓଡ଼ିଆ ଅନୁଷ୍ଠାନ ଗଢ଼ା ହୋଇଥିଲା ଏବଂ ସମାଜ ପକ୍ଷରୁ ଏକ ଓଡ଼ିଆ ସାପ୍ତାହିକ ମଧ୍ୟ ଅଳ୍ପ ଦିନ ପାଇଁ ପ୍ରକାଶ ପାଇଥିଲା । ମଧୁ ବାବୁ ଏହି ସମାଜର ପୃଷ୍ଠପୋଷକତା କରୁଥିଲେ । ଗୋପବନ୍ଧୁ ଓକିଲାତି ପଢ଼ିବା ପାଇଁ ଯେଉଁ ଅଳ୍ପ ସମୟ କଲିକତାରେ ଥିଲେ,

ସେହି ସମସ୍ତେ ଏହି ସମାଜକୁ ସବଳ କରିବାକୁ ଚେଷ୍ଟା କରି ଥିଲେ, ମାତ୍ର ପରେ ଏହା ଭାଙ୍ଗି ଯାଇଥିଲା ।

ପୁଣି କେତେ ବର୍ଷ ପରେ ଓଡ଼ିଆ ସମାଜ ନାମକ ଏକ ଅନୁଷ୍ଠାନ ପ୍ରେମଚାନ୍ଦ ବରାଲ ଷ୍ଟ୍ରିଟ୍‌ରେ ସ୍ଥାପିତ ହୋଇ ତାହା ତରଫରୁ ଏକ ନୈଶ ବିଦ୍ୟାଳୟ ପ୍ରତିଷ୍ଠା କରାଇଥିଲା । କଲିକତା ବିଶ୍ୱ-ବିଦ୍ୟାଳୟର ଭାଇସ୍‌ଚାନ୍‌ସେଲର ସାର୍ ଦେବପ୍ରସାଦ ସର୍ବାଧିକାରୀ ଏହାର ବର୍ଷକେତେ ସଭାପତି ମଧ୍ୟ ହୋଇଥିଲେ ।

ଗୋପବନ୍ଧୁ ଆରମ୍ଭରୁ ଏହି ଓଡ଼ିଆ ସମାଜକୁ ସବୁ ପ୍ରକାରେ ସାହାଯ୍ୟ ସମର୍ଥନ କରିଥିଲେ ।

୧୯୨୧ ଖ୍ରୀଷ୍ଟାବ୍ଦରେ ଯୁବରାଜଙ୍କ ଭାରତ ଆଗମନ ବେଳେ ଯେଉଁ ବିରାଟ ହରତାଳ କଲିକତାରେ ପାଳିତ ହୋଇଥିଲା ତାହାର ସାଫଲ୍ୟର ମୂଳ କାରଣ ହେଉଛନ୍ତି ଓଡ଼ିଆ ଶ୍ରମଜୀବୀ । ଦେଶବନ୍ଧୁ ଚିତ୍ତରଞ୍ଜନ ସେତେବେଳେ ବଙ୍ଗଳାର ଏକଛତ୍ର ନେତା । ଓଡ଼ିଆ ଶ୍ରମଜୀବୀମାନଙ୍କୁ ସଂଘବଦ୍ଧ କରିପାରିଲେ ଏକ ମସ୍ତ ବଡ଼ କାମ ହେବ ବୋଲି ଭାବି ଗୋପବନ୍ଧୁ କଲିକତାରେ ଏକ ସ୍ଥାୟୀ ଓଡ଼ିଆ ଶ୍ରମିକ ଅଫିସ ଖୋଲାଇ ଥିଲେ ଏବଂ ଦେଶବନ୍ଧୁଙ୍କ କଥାମତେ ବାବୁ ପଦ୍ମରାଜ ଜୈନ ଓ ନାଗରମଲ ମୁଦୀ ଏହାର ପ୍ରଧାନ କର୍ତ୍ତା ହୋଇଥିଲେ । ଏହି ଶ୍ରମିକ ସଂଘ ପକ୍ଷରୁ ବଡ଼ ବଜାରରେ ପ୍ରଥମ ଧର୍ମଘଟ ଓ ଓଡ଼ିଆଙ୍କର ମଜୁରୀ ବୃଦ୍ଧି ହୋଇ ଥିଲା । ଏ କଥା ନିଜେ ଗୋପବନ୍ଧୁ ଉପସ୍ଥିତ ଥାଇ ସମାଧାନ କରିଥିଲେ । ମୌଲାନା ଅବୁଲକାଲାମ ଆଜାଦ ସେତେବେଳେ ବଙ୍ଗଳା ଖିଲାଫତର ସଭାପତି ଥାଇ ଏହି ଶ୍ରମିକ ସଂଘକୁ ସାହାଯ୍ୟ ମଧ୍ୟ କରିଥିଲେ । ଏହା ଅନେକ ବର୍ଷ ଭଲ କାମ କରି ପରେ

ଭଲ କର୍ମୀ ଅଭାବରୁ ଅଚଳ ହୋଇଗଲା । ଏହା ସମୟରୁ ଗୋପବନ୍ଧୁ ନିୟମିତ ଭାବେ ଅମୃତବଜାର ପତ୍ରିକାରେ ଭଲ ଭଲ ପ୍ରବନ୍ଧମାନ ଓଡ଼ିଶା ସମ୍ପର୍କରେ ପ୍ରକାଶ କରିବାକୁ ଲାଗିଲେ ।

ସେ ନିଜେ ମଧୁ ବାବୁଙ୍କର ଅନୁଚର ରୂପେ ଉତ୍କଳ ସମ୍ମିଳନୀର କର୍ମୀ ହୋଇ ଥିଲେହେଁ କଂଗ୍ରେସରେ ଯୋଗ ଦେଇଥିଲେ । ମଧୁ ବାବୁ କିନ୍ତୁ ଓଡ଼ିଆଭାଷୀ ଅଞ୍ଚଳ ଏକତ୍ରୀକରଣ ନେଇ ସୁରେନ୍ଦ୍ର ବାନାର୍ଜି ପ୍ରଭୃତିଙ୍କ ସହିତ ମତ ଭେଦ କରି କଂଗ୍ରେସ ଛାଡ଼ି ଦେଇଥିଲେ ।

୧୯୦୫ ଖ୍ରୀଷ୍ଟାବ୍ଦରେ ଗୋପବନ୍ଧୁଙ୍କୁ ଆଉ ଗୋଟିଏ ଦାରୁଣ ଶୋକର ଆଘାତ ସହ୍ୟ କରିବାକୁ ପଡ଼ିଥିଲା । ଏହି ବର୍ଷ ତାଙ୍କର ଦୀକ୍ଷାଗୁରୁ ଏବଂ ଅତି ପ୍ରିୟ ବ୍ୟକ୍ତି ବାବୁ ରାମଚନ୍ଦ୍ର ଦାସଙ୍କ ମୃତ୍ୟୁ ଘଟିଲା । ନିଜ ପିତାଙ୍କ ମୃତ୍ୟୁରେ ସେ ଯେତେ ଅଭିଭୂତ ହୋଇ ନ ଥିଲେ ରାମଚନ୍ଦ୍ର ଦାସଙ୍କ ମୃତ୍ୟୁ ତହୁଁ ଅଧିକ ଭାବରେ ତାଙ୍କୁ ବିଚଳିତ କରି ଦେଇଥିଲା । ସେ ବର୍ଷଟା ହେଉଛି ସମାଧେଟ ସ୍ୱଦେଶୀ ଆନ୍ଦୋଳନର ଆରମ୍ଭ କାଳ ଏବଂ ସେହି ବର୍ଷ ଓଡ଼ିଶାର ଆକାର ଅନେକ ପରିମାଣରେ ବଢ଼ିଲା: ଲର୍ଡ଼ କର୍ଜନ ବଦଳାଇ ଦେଇ ଥାଆନ୍ତି ।

୧୯୦୬ ଖ୍ରୀଷ୍ଟାବ୍ଦରେ ଗୋପବନ୍ଧୁ କଲିକତାରେ ଓକିଲାତି ପରୀକ୍ଷା ଦେଇ କଟକ ଫେରି ଆସିଲେ । ପରୀକ୍ଷା ଫଳ ବାହାରିବାକୁ ଡେରି ଥାଏ । ସେତିକିବେଳକୁ ନୀଳଗିରିର ତତ୍କାଳୀନ ରାଜା ନିଜ ଗଡ଼ରେ ଗୋଟିଏ ହାଇସ୍କୁଲ ନୂଆ ଆରମ୍ଭ କରିଥିଲେ । ହାଇସ୍କୁଲର ସବୁ ଶ୍ରେଣୀର କାର୍ଯ୍ୟ ଆରମ୍ଭ ହୋଇ ନ ଥାଏ । ଗୋପବନ୍ଧୁ ଉକ୍ତ ହାଇ ସ୍କୁଲର ହେଡ୍‌ମାଷ୍ଟର ଚାକିରି ପାଇ ନୀଳଗିରିକୁ ଯାଇ-

ଶିକ୍ଷାଦାନ କାମରେ ମନ ଢାଳି ଦେଇ ଥିଲେ । ଅନୃପା ଦରବାର ସୁରୀ ଜିଲ୍ଲା ସ୍କୁଲରେ ମାଷ୍ଟରୀ କରୁଥିଲେ । ଗୋପବନ୍ଧୁ ତାଙ୍କୁ ମଧ୍ୟ ନୀଳଗିରି ନେଇ ଗଲେ । କିନ୍ତୁ ସେଥି ବିଡ଼ମ୍ବନାରୁ ତାଙ୍କ ଭାଗ୍ୟରେ ମାଷ୍ଟରୀ କାମ ବେଶୀ ଦିନ କରିବାକୁ ପଡ଼ି ନ ଥିଲା । ଅଳ୍ପ କାଳ ପରେ ନୀଳଗିରିର ରାଜା ହଠାତ୍ ମରି ଗଲେ । ରାଜ୍ୟ ସରକାରଙ୍କ ଖାସ୍ ତତ୍ତ୍ୱାବଧାନକୁ ଗଲା । ସେତେବେଳେ ଓଡ଼ିଶାରେ ପୋଲିଟିକାଲ୍ ଏଜେଣ୍ଟ ଥିଲେ କବ୍‌ଡେନ୍ ରାମ୍‌ସେ ନାମକ ଜଣେ ସିଭିଲିଅନ୍ । ଏ ଭାରି ଜବରଦସ୍ତ ହାକିମ ଥିଲେ ଏବଂ ଦେଶୀୟ ରାଜ୍ୟରେ ଉଚ୍ଚ ଶିକ୍ଷା ପ୍ରସାରର ବିରୋଧି ଥିଲେ । ରାଜାମାନେ ମଧ୍ୟ ତାଙ୍କୁ ଭୟରେ କରପତ୍ର ଯୋଡ଼ି ରହୁଥିଲେ । ରାମ୍‌ସେ ସାହେବ ହାଇ ସ୍କୁଲ୍ ଉଠାଇ ଦେଇଥିଲେ । ଥରେ କଟକର ଏକ ସଭାରେ ଓଡ଼ିଶା ଗଡ଼ଜାତ ବିଷୟରେ ବକ୍ତୃତା ଦେଇ ଗୋପବନ୍ଧୁ ଏହି ରାମ୍‌ସେ ସାହେବଙ୍କୁ ଲକ୍ଷ୍ୟ କରି କହିଥିଲେ "ରାମ୍‌ସେ ସାହେବଙ୍କ କଥା ରାମ୍ ରହ ।"

ନୀଳଗିରିରେ ଥିଲାବେଳେ ବି.ଏଲ୍. ପରୀକ୍ଷା ଫଳ ପ୍ରକାଶ ପାଇଲା ଏବଂ ଗୋପବନ୍ଧୁ ବି.ଏଲ୍. ପାଶ କରିବାର ଖବର ପାଇଲେ । କିନ୍ତୁ ପରୀକ୍ଷାରେ ପାଶ କରିବା ଆନନ୍ଦ ସେ ଉପଭୋଗ କରି ପାରି ନ ଥିଲେ, ଯେହେତୁ ସେ ଯେଉଁ ସଙ୍ଗେ ଟେଲିଗ୍ରାମ ପାଇଲେ ନିଜ ସ୍ତ୍ରୀ ଆପ୍ତି ଦେବୀଙ୍କର ମୃତ୍ୟୁ ସମ୍ବାଦ । ଏହି ଆକସ୍ମିକ ଶୋକ ସମ୍ବାଦରେ ତାଙ୍କର ମନ ବଡ଼ ବ୍ୟାକୁଳ ହୋଇଗଲା ଏବଂ ଜୀବନ-ପ୍ରତି ତାଙ୍କ ମନରେ ଗୋଟାଏ ଉଦାସୀନତା ଜନ୍ମିଲା ।

୧୯୦୬ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ କଲିକତାରେ କଂଗ୍ରେସ ମହାସଭା ବସିଲା । ସଭାପତି ହୋଇଥିଲେ ଦାଦାଭାଇ ନୌରୋଜୀ । ଦାଦାଭାଇ ପ୍ରଥମ ଭାରତୀୟ ଯେ କି ବିଲାତ ପାର୍ଲାମେଣ୍ଟ ସଭାରେ

ମଧ୍ୟ ସଦସ୍ୟ ହୋଇ ପାରିଥିଲେ । ବଙ୍ଗଦେଶ ଦୁଇ ଭାଗ ହେବାରୁ ଉପରାନ୍ତର ଯେଉଁ ସ୍ୱଦେଶୀ ଆନ୍ଦୋଳନ ଦେଖା ଦେଲା ତାହାକୁ ବନ୍ଦ କରିବା ପାଇଁ ଗଭର୍ଣ୍ଣମେଣ୍ଟ ନାନାଦି କଠୋର ଆଇନମାନ ଜାରି କରିଥିଲେ । କଂଗ୍ରେସ ମହାସଭା ଏହି ଆଇନ ବିରୁଦ୍ଧରେ ପ୍ରତିବାଦ ଜଣାଇ ଭାରତର ଲକ୍ଷ୍ୟ ସ୍ୱରାଜ୍ୟ ଲାଭ ବୋଲି ଘୋଷଣା କଲେ । ସରକାରୀ କର୍ମଚାରୀ ବିଶେଷ କରି ଗଡ଼ଜାତ ରାଜାଙ୍କ କର୍ମଚାରୀ କଂଗ୍ରେସକୁ ଗଲେ ସରକାରଙ୍କୁ ସହ୍ୟ ହେଉ ନ ଥିଲା । ଏହା ଜାଣି ଶୁଣି ମଧ୍ୟ ଗୋପବନ୍ଧୁ ସହକର୍ମୀ ହରିହର ଆଚାର୍ଯ୍ୟ ଏବଂ ଆଉ କେତେ ଜଣ ବନ୍ଧୁଙ୍କ ସହିତ ନୀଳଗିରିରୁ କଲିକତା କଂଗ୍ରେସକୁ ଯାଇଥିଲେ । କଂଗ୍ରେସରୁ ଫେରିଲା ପରେ ସେ ଆଉ ନୀଳଗିରିରେ ନ ରହି ପୁରୀ ଆସିଲେ ।

୧୯୦୭ ଖ୍ରୀଷ୍ଟାବ୍ଦରେ ବୈତରଣୀ ନଦୀରେ ଭୟଙ୍କର ବଢ଼ି ହେଲା । ହଜାର ହଜାର ଏକର ଜମି ବାଲି ମାଡ଼ିଗଲା ଏବଂ ହଜାର ହଜାର ଲୋକ ବାସହୀନ ହୋଇ ପଡ଼ିଲେ । ଏପରି ଅବସ୍ଥାରେ ଉପଯୁକ୍ତ ସରକାରୀ ସାହାଯ୍ୟର ବ୍ୟବସ୍ଥା ମଧ୍ୟ ହୋଇ ନ ଥିଲା । ଓଡ଼ିଶାରେ ସେପରି ଜାଣୁଆ ସମ୍ବାଦ ପତ୍ର ନ ଥିଲା । କଲିକତାର ସମ୍ବାଦ ପତ୍ରମାନ ଏ ଦିଗରେ ସେପରି ବେଶୀ ଭାବରେ ଚର୍ଚ୍ଚା ମଧ୍ୟ କରୁ ନ ଥିଲେ । ଗୋପବନ୍ଧୁ ନିଜର ସାଙ୍ଗ ସାଥିମାନଙ୍କୁ ମେଳାଇ ଏହି ବନ୍ୟା ପୀଡ଼ିତଙ୍କୁ ସାହାଯ୍ୟ କରିବା କାମରେ ଲାଗି ପଡ଼ିଲେ ଏବଂ ଗାଁରୁ ଗାଁ ପାଣିରେ ବୁଲି ପ୍ରକୃତ ବିବରଣ ସଂଗ୍ରହ କରି କଲିକତା ଦୈନିକ ଖବର କାଗଜମାନଙ୍କରେ ଛପାଇଲେ । ଏଥିରେ ପ୍ରଚାର ହେବାରୁ ବଙ୍ଗଳା ସରକାରଙ୍କ ନିଦ ଭାଙ୍ଗିଥିଲା । ଏହି ବନ୍ୟା ସାହାଯ୍ୟ କାମ ଯୋଗୁଁ ଗୋପବନ୍ଧୁଙ୍କ ନାମ ଭାରତର ଅନ୍ୟ ପ୍ରଦେଶରେ ମଧ୍ୟ ସୁଖ୍ୟାତ ହୋଇ ଉଠିଲା ।

ଗୋପବନ୍ଧୁ ପ୍ରଥମେ କଟକରେ ଓକିଲାତି ଆରମ୍ଭ କରିଥିଲେ; କାରଣ କଟକରେ ସେତେବେଳେ ଓଡ଼ିଶାର ଏକମାତ୍ର ଜଜ୍‌କୋର୍ଟ ରହିଥିଲା । କଟକରେ ସବୁ ଷାଣ୍ଢ଼ ଟେଣ୍ଡ଼ ଓକିଲ ମଧ୍ୟ ଥିଲେ; କିନ୍ତୁ ପୁରୀର ସାଧାରଣ ଜୀବନରେ କେତେଗୁଡ଼ିଏ ଅଭାବ ଘଟି ଥିଲା । ସେ ମନେ କଲେ ପୁରୀକୁ ଯାଇ ସେଠାରେ ସବୁ ପ୍ରକାର ସାଧାରଣ କାମରେ ଅଂଶ ଗ୍ରହଣ କରିବେ । କଟକରେ ତ ଏ କାମ ପାଇଁ ମଧୁ ବାବୁ ପ୍ରମୁଖ ଅନେକ ଅଛନ୍ତି; ପୁଣି ଏହା ମଧ୍ୟ ୨୨ ଫଳ । ଏଣୁ କଥା ଭାବି ୧୯୦୮ ଖ୍ରୀଷ୍ଟାବ୍ଦରେ ଗୋପବନ୍ଧୁ ପୁରୀରେ ଓକିଲାତି କରିବାକୁ ଯାଇଥିଲେ ।

ପୁରୀରେ ଅଳ୍ପକାଳ ରହିଲା ପରେ ସେ ନାନାଦି ଦେଶ-ହିତକର କାମମାନ କରି କର୍ତ୍ତୃପକ୍ଷଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ତାଙ୍କର କର୍ମକୁଶଳତା ଯୋଗୁଁ ସେ ପୁରୀ ମ୍ୟୁନିସିପାଲଟି ଓ ଜିଲା ବୋର୍ଡର ମେମ୍ବର ମଧ୍ୟ ହୋଇଥିଲେ । ଭାରତପ୍ରସିଦ୍ଧ ତୀର୍ଥକ୍ଷେତ୍ର ଥିବାରୁ ପୁରୀରେ ଶତ ଶତ କୁଷ୍ଠ ରୋଗୀ ସାହି ସାହି ବୁଲି ଭିକ ମାଗୁ ଥାଆନ୍ତି । କୁଷ୍ଠ ରୋଗର କିଛି ଚିକିତ୍ସା ବାହାରି ନ ଥାଏ । ତଥାପି ପୁରୀରେ ଗୋଟିଏ ସାନ କୁଷ୍ଠାଶ୍ରମ ଥିଲା; କିନ୍ତୁ ଉପଯୁକ୍ତ ପରିଚାଳନ ଅଭାବରୁ ତାହା ମଲା ପରି ହୋଇ ଯାଇଥିଲା । ଗୋପବନ୍ଧୁଙ୍କ ପରଦୁଃଖକାତର ହୃଦୟ ଦେଖି ପୁରୀ ଜିଲା ମାଜିଷ୍ଟ୍ରେଟ ତାଙ୍କୁ ଉକ୍ତ କୁଷ୍ଠାଶ୍ରମର ସମ୍ପାଦକ କାର୍ଯ୍ୟ ନେବାକୁ ଅନୁରୋଧ କରିଥିଲେ । ଗୋପବନ୍ଧୁ ମଧ୍ୟ ଆଗ୍ରହରେ ତାହା ଗ୍ରହଣ କରି ଲାଗି ପଡ଼ି ଅଳ୍ପ କାଳ ମଧ୍ୟରେ ଆଶ୍ରମକୁ ଏକ ନବ ଜୀବନ ଦେଇ ପାରିଥିଲେ । ଏଥିପାଇଁ ଜିଲା ହାକିମ ତାଙ୍କୁ ଶ୍ରଦ୍ଧା କରୁଥିଲେ । ମାତ୍ର ଏଇ ଗୋଟିଏ କାମରେ ସେ ନିଜକୁ ଆବଦ୍ଧ ରଖି ନ ଥିଲେ । ଯୁବକମାନଙ୍କୁ ଲାଠି ଖେଳ,

ଜନସବତ ପ୍ରଭୃତି ଶିକ୍ଷା ଦେବା ପାଇଁ ଗୋପବନ୍ଧୁ ନାନା ଆୟୋଜନ କରୁଥିଲେ । ଏହା ସରକାରଙ୍କର ଭାବ ଦୃଷ୍ଟିକଟୁ ହୋଇଥିଲା ।

ସତ୍ୟବାଦୀର ସାକ୍ଷୀଗୋପାଳ ଓଡ଼ିଶାର ଅନ୍ୟ ଏକ ପ୍ରସିଦ୍ଧ ତୀର୍ଥ । ମନ୍ଦିରର ଅନେକ ସମ୍ପତ୍ତି ମଧ୍ୟ ଅଛି । ଜିଲ୍ଲା ଜଜ୍‌ଙ୍କ ନିଯୁକ୍ତ ମଠେଇ ଗୋଟିଏ ଟ୍ରଷ୍ଟି ବୋର୍ଡ଼ ଏହି ସମ୍ପତ୍ତିର ରକ୍ଷଣାବେକ୍ଷଣ କରନ୍ତି; କିନ୍ତୁ ପ୍ରାୟତଃ କମିଟିର ମେମ୍ବରମାନେ ମନ୍ଦିରର ସ୍ୱାର୍ଥ କିଛି ଦେଖନ୍ତି ନାହିଁ । ନିଜର ଲାଭରେ ଲାଗିଥାନ୍ତି କିମ୍ବା ପଦର ସମ୍ମାନଟିକ ପାଇ ଅନ୍ୟ କାମରେ ଉଦାସୀନ ହୋଇ ପଡ଼ନ୍ତି । ଏଣୁ କରି ଦେବୋତ୍ତର ସମ୍ପତ୍ତି ନଷ୍ଟ ହୋଇ ଯାଏ । ଗୋପବନ୍ଧୁଙ୍କର ନିଷ୍ଠା, ସାଧୁତା ଓ ନିଃସ୍ୱାର୍ଥପରତା ଦେଖି ପୁରୀର ଜିଲ୍ଲା ମାଜିଷ୍ଟ୍ରେଟ୍ ସୁପାରିଶ କରି ତାଙ୍କୁ ଟ୍ରଷ୍ଟି ବୋର୍ଡ଼ରେ ଜଣେ ମେମ୍ବର କରାଇ ଦେଇଥିଲେ । ଗୋପବନ୍ଧୁ ମଧ୍ୟ ଅକ୍ଲାନ୍ତ ପରିଶ୍ରମ କରି ମନ୍ଦିର ସେବା ପୂଜାରେ ଅନେକ ଶୃଙ୍ଖଳା ସ୍ଥାପନ କରିଥିଲେ । ଏହି ମନ୍ଦିର କମିଟିରୁ ଜମି ନେଇ ଗୋପବନ୍ଧୁ ଏକ ମାଇନର ସ୍କୁଲ ମଧ୍ୟ ସ୍ଥାପନ କରିଥିଲେ । ନାନା ଅଜୁ ଖୁଣ୍ଟ, ବାଉଁଶ, ଛଣ ସଂଗ୍ରହ କରି ସେ ସ୍କୁଲ ଘର ବନାଇ ଥିଲେ । ମୋଟେ ୧୯ ଜଣ ଛାତ୍ର ନେଇ ପ୍ରଥମେ ବିଦ୍ୟାଳୟର କାମ ଆରମ୍ଭ ହୋଇଥିଲା । ପଣ୍ଡିତ ନୀଳକଣ୍ଠ ଦାଶ ତାଙ୍କର ଏ କାମରେ ସହକର୍ମୀ ହୋଇଥିଲେ । ନୀଳକଣ୍ଠ ବାବୁ ନିଜର ଉଗ୍ରମତ ଯୋଗୁଁ ପୁରୀ ମୁକ୍ତିମଣ୍ଡପ ପଣ୍ଡିତ ସଭାକୁ କଟୁ ସମାଲୋଚନା କରିବାରୁ ବଡ଼ ଅପ୍ରିୟ ହୋଇ ପଡ଼ିଥିଲେ ଏବଂ ତାଙ୍କର ପ୍ରତି ଶତ୍ରୁତା କରି ରକ୍ଷଣଶୀଳ ବ୍ରାହ୍ମଣ ସମାଜ ସତ୍ୟବାଦୀ ସ୍କୁଲକୁ ପୋଡ଼ି ଦେଇଥିଲେ । ସ୍କୁଲ ଗୃହ ପୋଡ଼ି ଯିବାରୁ ସମଗ୍ର ଓଡ଼ିଶାରେ ସାହାଯ୍ୟ ଭିକ୍ଷା କରି ଚୁରୁକ ପତ୍ର ପଠା ଯାଇଥିଲା । ବିଦ୍ୟାଳୟ ସ୍ଥାପନର ଉଦ୍ଦେଶ୍ୟ ଥିଲା

ପିଲାଏ ସେଠି ପାଠ ପଢ଼ିବେ ଏବଂ ବଡ଼ ହୋଇ ଦେଶ କାମ କରିବାକୁ ଶିଖିବେ । ଦେଶ ନିସ୍ୱାର୍ଥପର କର୍ମୀ ପାଇ ପାରିବ ।

ପୁରୀରେ ନିଜ ଦୀକ୍ଷା ଗୁରୁ ମୁକ୍ତାର ରାମଚନ୍ଦ୍ର ଦାସଙ୍କ ଘରେ ରହି ଗୋପବନ୍ଧୁ ଓକିଲତି ଆରମ୍ଭ କରିଥିଲେ । ତାଙ୍କ ଭଳି ପ୍ରତିଭାବାନ୍ ଓକିଲ ସେତେବେଳେ ଓଡ଼ିଶାରେ ବିରଳ ଥିଲା । ଓକିଲାତିରେ ମନ ଲଗାଇ ଥିଲେ ସେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରି ପାରିଥାନ୍ତେ; ମାତ୍ର ଓକିଲାତି ବ୍ୟବସାୟ ତାଙ୍କୁ ଆକର୍ଷଣ କରିପାରି ନ ଥିଲା । ସେ ସବୁବେଳେ ଗରୀବ ଦୁଃଖୀଙ୍କ ପାଇଁ କାନ୍ଦୁଥିଲେ ଏବଂ ମକ୍କେଲ୍ ଆସିଲେ ଉଭୟ ଦଳଙ୍କୁ ଧରା ଧରି କରି ମକଦ୍ଦମା ରଫା କରି ଦେଉଥିଲେ ।

ତାଙ୍କର ଦରଖାସ୍ତ ଲେଖିବା ଧରଣ ସ୍ୱତନ୍ତ୍ର ଓ ମୌଳିକ ଥିଲା ବୋଲି ଅନେକେ ତାଙ୍କ ପାଖରୁ ଅର୍ଜି ଲେଖାଇ ନେଉଥିଲେ । ତାଙ୍କର ସାଧୁତା ଯୋଗୁଁ ହାକିମମାନେ ମଧ୍ୟ ତାଙ୍କୁ ଖୁବ ଶ୍ରଦ୍ଧା କରୁଥିଲେ । ତଥାପି ଅଧିକାଂଶ ସମୟ ଅନ୍ୟ କାମରେ ରହିବାରୁ ତାଙ୍କୁ ଅର୍ଥାଭାବ ଘଟିଲା, ବିଶେଷ କରି ସତ୍ୟବାଦୀ ସ୍କୁଲ ଚଳାଇବା ପାଇଁ ସେ ଦେଶରୁ ଆଶାନୁରୂପ ସାହାଯ୍ୟ ପାଇ ନ ଥିଲେ । ଏଣୁ ଅର୍ଥ ସଂଗ୍ରହ ଆଶାରେ ସେ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ଆହ୍ୱାନକ୍ରମେ ସେଠାକୁ ସରକାରୀ ଓକିଲ କାମରେ ରହିଗଲେ । ମହାରାଜା ମଧ୍ୟ ସବୁ କ୍ଷେତ୍ରରେ ତାଙ୍କର ପରାମର୍ଶ ନେଇ କାମ କରିବାକୁ ଲାଗିଲେ । ବାରିପଦାରେ ମହାରାଜା ଗୋଟିଏ ଅନାଥାଶ୍ରମ ପ୍ରତିଷ୍ଠା କରି ତାହାର ପରିଚାଳନା ଭାର ଗୋପବନ୍ଧୁଙ୍କୁ ଅର୍ପଣ କରିଥିଲେ । ସେଠାରେ ଥିଲାବେଳେ କେତେଜଣ ସାନ୍ତାଳ ପିଲାଙ୍କୁ ନିଜ ବସାରେ ରଖି ଗୋପବନ୍ଧୁ ପାଠ ପଢ଼ାଉଥିଲେ ।

ଏହାପରେ ୩ବର୍ଷ ଅତୀତ ହେଲା ପରେ ରାଜା ମଧୁପୁରୀ ଶିକାରକୁ ଯାଇ ଅକସ୍ମାତ୍ ଜ୍ୱରରେ ମୃତ୍ୟୁ ଲଭିଲେ । ରାଜ୍ୟ ସରକାରଙ୍କ ହାତକୁ ଗଲା । ଗୋପବନ୍ଧୁ ସେଠାରେ ଅନ୍ୟ କାମ ପାଇଥିଲେ ମଧ୍ୟ ତାହା ନ କରି କଟକ ଫେରି ଆସିଲେ । କଟକରେ ମାତ୍ର ୩ ମାସ ରହି ପୁରୀକୁ ଫେରିଗଲେ ।

୧୯୧୧ ଖ୍ରୀଷ୍ଟାବ୍ଦରେ ସତ୍ୟବାଦୀ ମାଇନର ସ୍କୁଲ୍ ହାଇ ସ୍କୁଲ୍ ହେଲା ଏବଂ ପ୍ରଥମ ହେଡ୍‌ମାଷ୍ଟର ହେଲେ ପଣ୍ଡିତ ନୀଳକଣ୍ଠ । ଏହାଙ୍କର ଢଙ୍ଗ ରଙ୍ଗ ଯୋଗୁଁ ଉତ୍ସାହୀ ବର୍ଦ୍ଧନଶୀଳ ବ୍ରାହ୍ମଣମାନେ ସ୍କୁଲ ଚଳାଇ ଦେବା କଥା ପୂର୍ବରୁ କୁହା ଯାଇଅଛି । ଏହି ସ୍କୁଲରେ ଅନ୍ୟତମ ମାଷ୍ଟର କାମ କରୁଥିଲେ ବାବୁ ରାମଚନ୍ଦ୍ର ରଥ । ଏ ମହାଶୟ ପୁରୀରେ କିରାଣୀ କାମ କରୁଥିଲେ କିନ୍ତୁ ଗୋପବନ୍ଧୁଙ୍କ ପ୍ରଭାବରେ ପଡ଼ି ସେ କାମ ଛାଡ଼ି ଶିକ୍ଷକ ହୋଇଥିଲେ । ଏହା ପୂର୍ବରୁ ଆଚାର୍ଯ୍ୟ ହରିହର ଦାଶ କଟକ ପ୍ୟାରୀମୋହନ ଏକାଡେମୀରେ ମାଷ୍ଟର ଥିଲେ । ସେ ମଧ୍ୟ ଆସି ସତ୍ୟବାଦୀ ସ୍କୁଲରେ ଯୋଗ ଦେଲେ । ୧୯୧୩ରେ ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ୧୯୧୪ ରେ ପଣ୍ଡିତ କୃପାସିନ୍ଧୁ ମିଶ୍ର ଏମ୍. ଏ. ପାଶ୍ କରି ଦାରିଦ୍ର୍ୟ ବରଣ କରି ଏହି ସ୍କୁଲରେ ଶିକ୍ଷକ ହୋଇଥିଲେ । ଏତେଗୁଡ଼ିଏ ନିଷ୍ଠାପର କର୍ମୀଙ୍କ ଯୋଗୁଁ ସତ୍ୟବାଦୀ ସ୍କୁଲ ଅଳ୍ପଦିନରେ ପ୍ରଭୂତ ଉନ୍ନତି କଲା ଏବଂ ଭାରତର ବହୁ ବଡ଼ ବଡ଼ ଶିକ୍ଷାବିତ୍ ଏହାର ବହୁ ପ୍ରଶଂସା କରିବାକୁ ଲାଗିଲେ । କାଳକ୍ରମେ ଅଳ୍ପ କେତେ ବର୍ଷ ମଧ୍ୟରେ ସତ୍ୟବାଦୀ ସ୍କୁଲ ଭାରତରେ ଏକ ଆଦର୍ଶ ବିଦ୍ୟାଳୟରୂପରେ ପରିଗଣିତ ହେଲା । ଓଡ଼ିଶାର ସବୁଅଞ୍ଚଳରୁ ଛାତ୍ରମାନେ ସେଠାରେ ଆସି ନାମ ଲେଖାଇଲେ । ମାତ୍ର ଏତଦବସରରେ ମହାତ୍ମା ଗାନ୍ଧି ୧୯୨୧ ରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ବହୁତ ସ୍କୁଲ କଲେଜ ଭାଙ୍ଗିଗଲା ଏବଂ ଗୋପବନ୍ଧୁ

ଏହ୍ସ ଆନ୍ଦୋଳନରେ ଝାମ୍ପ ଦେଲେ । ଗୋପବନ୍ଧୁ ପୂର୍ବରୁ ନାମକୁ ମାତ୍ର ଉତ୍କଳିତ କରୁଥିଲେ । ତାଙ୍କର ଅଧିକାଂଶ ସମୟ ଦେଶ ସେବା ଓ ସତ୍ୟବାଦୀ ସ୍କୁଲ ପାଇଁ କଟୁଥିଲା ।

୧୯୧୨ ଖ୍ରୀଷ୍ଟାବ୍ଦରେ ଗୋପବନ୍ଧୁଙ୍କର ଆତ୍ମୀୟସ୍ୱଜନ ତାଙ୍କୁ ପୁଣି ବିବାହ ହେବାକୁ ବିଶେଷ ଅନୁରୋଧ କରିଥିଲେ । ବଡ଼ ଭାଇ ମଧ୍ୟ ସବୁବେଳେ ଏକଥା କହୁଥିଲେ । ମେଦିନୀପୁରର ଉତ୍କଟ ଉତ୍କଳ ରାଧାନାଥ ପତିଙ୍କ କନ୍ୟା ସହିତ ତାଙ୍କର ବିବାହ ପ୍ରସ୍ତାବ ମଧ୍ୟ ଆସିଥିଲା ମାତ୍ର ଗୋପବନ୍ଧୁ ଆଉ ସଂସାର ବନ୍ଧନରେ ଆବଦ୍ଧ ନ ରହି ପୂର୍ଣ୍ଣ ପ୍ରାଣରେ ଦେଶସେବା କରିବେ ବୋଲି ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଥିଲେ ।

ସତ୍ୟବାଦୀ ସ୍କୁଲରେ ନିର୍ଦ୍ଦିଷ୍ଟ ପାଠ୍ୟ ଛଡ଼ା ଶରୀର ସ୍ୱାସ୍ଥ୍ୟଚର୍ଚ୍ଚା ଏବଂ ବୈଷୟିକ ଶିକ୍ଷା ମଧ୍ୟ ଦିଆ ଯାଉଥିଲା । ଆଜି ଦୀର୍ଘକାଳ ପରେ ସରକାର ମଧ୍ୟ ସେହି ସବୁକୁ ଶିକ୍ଷାର ଆଦର୍ଶ ବୋଲି ଗ୍ରହଣ କରି ଅଛନ୍ତି ।

ପ୍ରଥମେ ସତ୍ୟବାଦୀ ସ୍କୁଲକୁ ବିଶ୍ୱବିଦ୍ୟାଳୟରୁ ମଞ୍ଜୁରୀ ମିଳିବା କଷ୍ଟକର ହୋଇଥିଲା । ଗୋପବନ୍ଧୁ ମଧ୍ୟ ସରକାରୀ ସାହାଯ୍ୟ ନେଇ ସରକାରଙ୍କ ମୁଠାକୁ ଆସିବାକୁ ପସନ୍ଦ କରୁ ନଥିଲେ । ଏତେବେଳକୁ ପୁରୀ ମାଜିଷ୍ଟ୍ରେଟ ଥିଲେ ପଣ୍ଡିତ ରମାବଲ୍ଲଭ ମିଶ୍ର । ତାଙ୍କର ସୁପାରିଶ ଯୋଗୁଁ ୧୯୧୪ ରେ ସ୍କୁଲ ମଞ୍ଜୁରୀ ପାଇଥିଲା ।

ଦ୍ୱିତୀୟବାର ବିବାହ ନ କରିବାରେ ଗୋପବନ୍ଧୁଙ୍କ ଆଦର୍ଶ ଥିଲେ ମଧୁବାବୁ । ସେ ସଂସାର ବନ୍ଧନରେ ନ ଥିବାରୁ ଲକ୍ଷ ଲକ୍ଷ ଟଙ୍କା ଅକାତରରେ ଦେଶ କାମରେ ଢାଳି ଦେଉଥିଲେ । ମଧୁ ବାବୁ ମଧ୍ୟ ଗୋପବନ୍ଧୁଙ୍କ କାମ ଦେଖି ଜାଣିଥିଲେ ଯେ ଦିନେ ଗୋପବନ୍ଧୁ ହିଁ

ତାଙ୍କର ସ୍ଥାନ ପୂରଣ କରିବେ । ମଧୁବାବୁଙ୍କ ପରାମର୍ଶରେ ଗୋପବନ୍ଧୁ ୧୯୧୭ଠାରୁ ୧୯୨୦ ଖ୍ରୀଷ୍ଟାବ୍ଦ ଯାଏ ବିହାର ବ୍ୟବସ୍ଥା ସଭାରେ ଓଡ଼ିଶା ମ୍ୟୁନିସିପାଲିଟି ଓ ଜିଲ୍ଲା ବୋର୍ଡର ପ୍ରତିନିଧି ଥିଲେ ଏବଂ ଉକ୍ତ ସଭାରେ ଓଡ଼ିଶା ପାଇଁ ସର୍ବଦା ଲଢୁଥିଲେ । ଅନ୍ୟ ଓଡ଼ିଆ ମେମ୍ବର ମାନେ କେବଳ ସମାନୁଜ୍ଞ ମତ ପ୍ରକାଶ କରି ନୀରବ ରହୁଥିଲେ ଅବା ସରକାରଙ୍କୁ ଅନ୍ଧ ଭାବରେ ସମର୍ଥନ କରୁଥିଲେ ।

ଓଡ଼ିଶାର ବିଭିନ୍ନ ବିଷୟ ତନ୍ନ ତନ୍ନ କରି ସନ୍ଧାନ ନେଇ ଗୋପବନ୍ଧୁ ବ୍ୟବସ୍ଥା ସଭାରେ ଯେଉଁସବୁ ଓଜସ୍ୱିନୀ ଭାଷାରେ ସରକାରଙ୍କ ଦୁର୍ନୀତିମାନ ଦର୍ଶାଉଥିଲେ ସେଥିରେ ସରକାରୀ ହାକିମଙ୍କ ହୃତକମ୍ପ ଜାତ ହେଉଥିଲା । ବିରୁଦ୍ଧ ଦଳର ଲୋକ ଥିଲେ ମଧ୍ୟ ତାଙ୍କର ଦେଶପ୍ରେମ, ଜନସେବା, ସାଧୁତା, ନିର୍ଭୀକତା ଏବଂ ନିସ୍ୱାର୍ଥପରତା ଯୋଗୁଁ ଲାଟସାହେବ ତାଙ୍କୁ ଖୁବ ଶ୍ରଦ୍ଧା କରୁଥିଲେ ଏବଂ ମଣ୍ଟାଗୁ ଶାସନ ଆଇନ ଜାରି ପରେ ତାଙ୍କୁ ନିଜର ମନ୍ତ୍ରୀ କରିବେ ବୋଲି କହୁଥିଲେ ।

୧୯୧୭ ମସିହାରେ ପୁରୀ ଦୁର୍ଭିକ୍ଷ ବେଳେ ସେ ପୁରୀ ମାଜିଷ୍ଟ୍ରେଟ ଓ ଓଡ଼ିଶା କମିଶନରଙ୍କ ଅତିରଞ୍ଜିତ ରିପୋର୍ଟକୁ ମିଥ୍ୟା ବୋଲି ପ୍ରମାଣ କରି ଦେଇଥିଲେ । ଏହା ଫଳରେ ହାମଣ୍ଡ-ସାହେବ ପୁରୀ ବୁଲି ଦେଖିବାକୁ ଆସିଥିଲେ ଏବଂ ଦୁର୍ଭିକ୍ଷ ସାହାଯ୍ୟ କେନ୍ଦ୍ରମାନ ଫିଟିଥିଲା ।

ବନ୍ୟା ଓ ଦୁର୍ଭିକ୍ଷ ସାହାଯ୍ୟ କାମରେ ଗୋପବନ୍ଧୁ ଦୀନବନ୍ଧୁ ଆଣ୍ଡ୍ରୁଜ ଏବଂ ପଞ୍ଜାବ କେଶରୀ ଲାଲା ଲଜପତ ରାୟଙ୍କ ବିଶେଷ ଶ୍ରଦ୍ଧା ଆକର୍ଷଣ କରି ପାରିଥିଲେ । ଆଣ୍ଡ୍ରୁଜ ସାହେବ ନିଜେ ବନ୍ୟା ସାହାଯ୍ୟ କାର୍ଯ୍ୟରେ ଆସି ଓଡ଼ିଶା ତମାମ ବୁଲିଥିଲେ ।

୧୯୧୫ ଖ୍ରୀଷ୍ଟାବ୍ଦରେ ନିର୍ଭୀକ ସମାଲୋଚନା ପ୍ରକାଶ କରିବା ପାଇଁ ଗୋପବନ୍ଧୁ ସତ୍ୟବାଦୀ ନାମକ ଏକ ମାସିକ ପତ୍ରିକା ପ୍ରକାଶ କରିଥିଲେ ଏବଂ ୧୯୧୯ ରେ ଦେଶର ଜନମତ ଗଠନ ଓ ବିକାଶ କରିବା ପାଇଁ ସମାଜ ନାମକ ସାପ୍ତାହିକ ପତ୍ରିକା ପ୍ରତିଷ୍ଠା କରିଥିଲେ । ଏହି ପତ୍ରିକା ନିମିତ୍ତ କଲିକତାର ଜାରମଲ୍ଲିନ୍ କମ୍ପାନୀର ତ୍ରିଲୋଚନ ମହାନ୍ତି ତାଙ୍କୁ ଖଣ୍ଡିଏ ହ୍ୟାଣ୍ଡପ୍ରେସ ଦେଇଥିଲେ ଏବଂ ଗୋପବନ୍ଧୁ କଲିକତା ଗଲେ ତାଙ୍କର ଘରେ ଅତିଥି ହେଉଥିଲେ । ଦେଶ ମିଶ୍ରଣ ପାଇଁ ଗୋପବନ୍ଧୁ ଅକ୍ଳାନ୍ତ ପ୍ରଚାର କରି ସିଂହଭୂମ ଓ ସମ୍ବଲପୁରଠାରୁ ସ୍ୱତନ୍ତ୍ର ପତ୍ରିକମାନ ପ୍ରକାଶ କରାଇଥିଲେ ଏବଂ ଚକ୍ରଧରପୁର ଓ ବାହାଡ଼ାଗୋଡ଼ା ଠାରେ ଓଡ଼ିଆ ହାଇସ୍କୁଲ୍ ବସାଇଥିଲେ । ପଣ୍ଡିତ ଗୋଦାବରୀଶ, ବାସୁଦେବ ମହାପାତ୍ର ଓ କୃଷ୍ଣଚନ୍ଦ୍ର ପଟ୍ଟନାୟକ ପ୍ରଭୃତିଙ୍କୁ ଏହି ସ୍କୁଲକୁ ସେ ପଠାଇଥିଲେ ।

ଇଚ୍ଛାପୁରଠାରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନରେ ପୂର୍ବ ବର୍ଣ୍ଣିତ ଜାରମୋଲ୍ଲିନ କମ୍ପାନୀ ନିଜର ବିଜ୍ଞାପନ ପ୍ରଚ୍ଛଦ ପଟରେ ତାଙ୍କର ଫୋଟ ଛାପି ତାଙ୍କୁ ଉତ୍କଳମଣି ପଦବୀରେ ଭୂଷିତ କରିଥିଲେ । ଏହା ୧୯୨୨ ଖ୍ରୀଷ୍ଟାବ୍ଦର କଥା । ଗୋପବନ୍ଧୁ ସେହି ଦିନରୁ ଉତ୍କଳମଣି ବୋଲି ସର୍ବତ୍ର ସୁପରିଚିତ । ପଦ୍ମଲୋଚନ ଶୁଭ କ୍ଷଣରେ ଏହି ନାମଟି ବାଛିଥିଲେ ।

ଗୋପବନ୍ଧୁ ସମାଜ ପାଇଁ ଯେଉଁ ପ୍ରେସ ସ୍ଥାପନ କରିଥିଲେ, ତାହା ସତ୍ୟବାଦୀ ପ୍ରେସ ନାମରେ ପରିଚିତ ଏବଂ ଆଜି କାଲି ଓଡ଼ିଶାରେ ସର୍ବ ବୃହତ୍ ମୁଦ୍ରାଯନ୍ତ୍ର । ଏହା ପ୍ରଥମେ ସତ୍ୟବାଦୀ ଠାରେ ଥିଲା । ପରେ ୧୯୨୫ରେ ପୁରୀକୁ ଉଠିଗଲା ଏବଂ ପରିଚାଳନାର ସୁବନ୍ଦୋବସ୍ତ ନିମିତ୍ତ ୧୯୨୭ରୁ କଟକରେ ରହିଅଛି ।

ସିଂହଭୂମିର ହାଇସ୍କୁଲ ଚଳାଇବା ପାଇଁ ଗୋପବନ୍ଧୁ ଗୋଟିଏ ପଲ୍ଲିଶିକ୍ଷା ପାଣ୍ଠି ଖୋଲିଥିଲେ । ଏହି ପାଣ୍ଠିର ସମସ୍ତ ଟଙ୍କା କଟକ କଲେଜ ଅଧ୍ୟକ୍ଷଙ୍କ ଠାରେ ରହୁଥିଲା । ପଇସାଟିଏ କରି ପ୍ରାୟ ୪ ହଜାର ଟଙ୍କା ଅଧ୍ୟକ୍ଷଙ୍କ ପାଖରେ ଜମା ଥିଲା । ପରେ ଏହି ଟଙ୍କା ସିଂହଭୂମି ଉତ୍କଳ ସଭାକୁ ଦିଆଗଲା ।

୧୯୧୩ ଠାରୁ ଦେଶ ମିଶଣ ସମ୍ପର୍କରେ ପ୍ରଚାର କରିବା ପାଇଁ ଗଞ୍ଜାମ ବ୍ରହ୍ମପୁରରୁ ଆଶା ପତ୍ରିକା ପ୍ରକାଶିତ ହେଲା । ସମ୍ପାଦକ ହୋଇଥିଲେ ଶଶିଭୂଷଣ ରଥ ଏବଂ ଏହି ପତ୍ରିକାକୁ ଗୋପବନ୍ଧୁ ନିୟମିତ ଅଗ୍ରଲେଖମାନ ପଠାଉଥିଲେ । ଗୋପବନ୍ଧୁ ନିଜର ମାସିକ ସତ୍ୟବାଦୀ ପତ୍ରିକାକୁ ପ୍ରଥମେ ଆଶା ପ୍ରେସରୁ ଛାପୁ ଥିଲେ । ପରେ ନାନା ଅସୁବିଧା ହେବାରୁ କିଛି ଟଙ୍କା ସଂଗ୍ରହ କରି ପୁରୀର ନୀଳାଚଳ ପ୍ରେସ କିଣି ନେଇ ସତ୍ୟବାଦୀ ପ୍ରେସ ନାମ ଦେଇଥିଲେ ।

ସମାଜର ସମ୍ପାଦକ ହିସାବରେ ଗୋପବନ୍ଧୁ ଓଡ଼ିଶାର ଗତାନୁଗତିକତା ଛାଡ଼ି ଏକ ନୂଆ ଲେଖନ ଶୈଳୀ ପ୍ରବର୍ତ୍ତନ କଲେ । ତାହା ଜଗନ୍ନାଥ ଦାସଙ୍କ ଭାଗବତ ପରମ୍ପରା—ଆଜିଯାଏ ସେହି ପରମ୍ପରା ଓଡ଼ିଶା ସମ୍ବାଦ ପତ୍ରର ଆଦର୍ଶ ହୋଇ ରହିଅଛି ।

୧୯୧୭ । ୧୮ ରେ ଗୋପବନ୍ଧୁ ସମବାୟ ସମିତିରେ ଖୁବ ମନ ପ୍ରାଣ ଦେଇ ଲଢ଼ିଥିଲେ ମାତ୍ର ପରେ ବୁଝିଲେ ଏହା ମଧ୍ୟ ସରକାରଙ୍କ ଅନ୍ୟ ବିଭାଗ କରି ଗୋଟିଏ ଲଫାପା ଦୁରସ୍ତ କାମ ।

୧୯୨୦ ରେ କଲିକତାରେ କଂଗ୍ରେସର ବିଶେଷ ଅଧିବେଶନ ବସି ଅସହଯୋଗ କାର୍ଯ୍ୟକ୍ରମ ଧାର୍ଯ୍ୟ ହେଲା । ଏହା ପର ବର୍ଷ ଉତ୍କଳ ସମ୍ମିଳନୀର ଅଧିବେଶନ ବସିଲା ଚକ୍ରଧରପୁରଠାରେ ଏବଂ ସେଥିରେ ସ୍ଥିର ହେଲା ସମ୍ମିଳନୀ କଂଗ୍ରେସରେ ଅଂଶ ହୋଇ ରହିବ ।

ଗୋପବନ୍ଧୁଙ୍କ ଚେଷ୍ଟାରେ ସିଂହଭୂମି ଜିଲାରେ ଓଡ଼ିଆ ବାଳବାଳିକା ସ୍କୁଲ ମାନଙ୍କରେ ଭାଷା ରୂପେ ସ୍ଥାୟୀତ୍ୱ ପାଇଥିଲା ।

୧୯୧୯ ଖ୍ରୀଷ୍ଟାବ୍ଦରେ ଉତ୍କଳ ସମ୍ମିଳନୀର କଟକ ଅଧିବେଶନରେ ଗୋପବନ୍ଧୁ ସଭାପତି ହୋଇଥିଲେ ଏବଂ ତାଙ୍କର ସଭାପତି ଅଭିଭାଷଣ ଯେମିତି ଅପୂର୍ବ ସେମିତି ଅନବଦ୍ୟ । ସେ ପର୍ଯ୍ୟନ୍ତ କୌଣସି ଓଡ଼ିଆ ଓଡ଼ିଶାକୁ ଏପରି ଜୀବନ୍ତ, ଜାଗ୍ରତ ସାକ୍ଷାତ ମହାମୂର୍ତ୍ତି ଜନନୀ ବୋଲି ଭାବିପାରି ନ ଥିଲା ବା କହିପାରି ନ ଥିଲା ।

ଗୋପବନ୍ଧୁ ଏକା କଂଗ୍ରେସରେ ମିଶି ନ ଥିଲେ, ତାଙ୍କ ସହିତ ତାଙ୍କର ସହକର୍ମୀମାନେ ମଧ୍ୟ ଥିଲେ । ତାଙ୍କ ଉପରେ ପ୍ରଥମେ ୧୦୪ ଧାରା ଜାରି ହେଲା ଏବଂ ସମାଜରେ ପ୍ରକାଶିତ ତାଙ୍କର ଗୋଟିଏ ଲେଖା ପାଇଁ ମାନହାନି ମକଦ୍ଦମା ମଧ୍ୟ ହେଲା । ସେଥିରୁ ତାଙ୍କୁ ସୁରେଶ ବାବୁ ଦୋଷମୁକ୍ତ ଖଲାସ ଦେଲେ ଏବଂ ଜୋରିମାନା ମଧ୍ୟ ଛାଡ଼ି ଦେଲେ । ଏହି ସୁରେଶ ବାବୁ ହେଉଛନ୍ତି ସୁଭାଷ ବାବୁଙ୍କ ବଡ଼ ଭାଇ ।

୧୯୨୩ ରେ ପୁଣି ଦୁଇଟି ଦଫାରେ ତାଙ୍କୁ ଧରି ଦୁଇ ବର୍ଷ ଜେଲ ଦିଆଗଲା ଏବଂ ୧୯୨୩ ରେ ତାଙ୍କୁ ହଜାରିବାଗ କେନ୍ଦ୍ର ଜେଲକୁ ନିଆଗଲା । ଏହି ଜେଲଖାନାରେ ସେ ପୁଣି ସାହିତ୍ୟ ଚର୍ଚ୍ଚା ଆରମ୍ଭ କରିବାର ସୁଯୋଗ ପାଇ ଧର୍ମପଦ, କାରା କବିତା, ନଚିକେତା ପ୍ରଭୃତି ସୁନ୍ଦର କବିତା ବହି ଲେଖିଥିଲେ । ଆଜି ସେ ସବୁ ଆମ ଭାଷାର ଅମୂଲ୍ୟ ସମ୍ପଦ ।

୧୯୨୪ ଜାନୁଆରି ୨୬ ତାରିଖ ଦିନ ସେ ଜେଲରୁ ଫେରି କଟକ ଆସିଲେ । ଗୋପବନ୍ଧୁଙ୍କର ପୁତ୍ର ମରି ଯାଇଥିଲେ । ଦୁଇ କନ୍ୟାଙ୍କୁ ବାହା ଦେଲା ପରେ ସେ ଏକ ପ୍ରକାର ସଂସାରତ୍ୟାଗୀ ସନ୍ନ୍ୟାସୀ ପରି ଜୀବନ ଯାପନ କରୁଥିଲେ ।

୧୯୨୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ କଟକ ପୁରୀ ଜିଲ୍ଲାରେ ନମାଗତ ବନ୍ୟା ବିପ୍ଳବ ଓ ତହିଁର ଆନୁଷଙ୍ଗିକ ଦୁର୍ଭିକ୍ଷ ଲାଗି ରହିଲା । ଏହି ଦୁର୍ଭିକ୍ଷ ଓ ବନ୍ୟାରେ ସାହାଯ୍ୟ ପାଇଁ ଭାରତର ଗୃହଅଙ୍କୁ ସାହାଯ୍ୟ ଆସିଲା । ଲାଲା ଲଜପତ ରାୟ ବହୁ ଅର୍ଥ ସଂଗ୍ରହ କରି ତାଙ୍କ ପାଖକୁ ପଠାଇ ଥିଲେ ଏବଂ କଣକେତେ କର୍ମୀ ମଧ୍ୟ ଯୋଗାଇ ଥିଲେ । ଗୋପବନ୍ଧୁ ଲାଲାଜୀଙ୍କ ଜନସେବା ପ୍ରବୃତ୍ତିରେ ମୁଗ୍ଧ ହୋଇ ତାଙ୍କର ପ୍ରତିଷ୍ଠିତ ଲୋକସେବକ ଦଳରେ ଯୋଗ ଦେଇଥିଲେ ଏବଂ ଶୀଘ୍ର ତହିଁର ସହକାରୀ ସଭାପତି ମଧ୍ୟ ହୋଇ ପାରି ଥିଲେ । ୧୯୨୮ ଖ୍ରୀଷ୍ଟାବ୍ଦରେ ତାଙ୍କ ଉପରେ ବଜ୍ରାଘାତ ତୁଲ୍ୟ ବଡ଼ ଭାଇଙ୍କ ମୃତ୍ୟୁ ଘଟିଲା । ଏହାର ବର୍ଷକ ପୂର୍ବରୁ ତାଙ୍କର ସହକର୍ମୀ ତରୁଣ ଐତିହାସିକ କୃପାସିନ୍ଧୁ ମିଶ୍ରଙ୍କ ଅକାଳ ମୃତ୍ୟୁ ତାଙ୍କୁ ମୁହ୍ୟମାନ କରିଦେଇ ଥାଏ । ତଥାପି ଏପରି ଅବସ୍ଥାରେ ସେ ଗରିବ ବିଧବା ମାନଙ୍କ ପାଇଁ ପୁରୀଠାରେ ଜଗନ୍ନାଥ ବିଧବାଶ୍ରମ ପ୍ରତିଷ୍ଠା କରି ଏହାର ଭାର ଅଗ୍ରଣୀ ହରିହରଙ୍କୁ ଦେଇଥିଲେ । ମୋଟ ଉପରେ ରାଜନୀତିରେ ସେ ବାଧ୍ୟ ହୋଇ ପଶି ଥିଲେ ମଧ୍ୟ ତାଙ୍କର କର୍ମବହୁଳ ଜୀବନ ସମାଜ ସେବା, ଦୁଃସ୍ଥ ସେବା ଓ ଦରିଦ୍ର ସେବାର ସର୍ବାଙ୍ଗୀଣ ଜୀବନ ଅଟେ ।

୧୯୧୯ ସାଲରେ ପୁରୀରେ ଯେଉଁ ନିଦାରୁଣ ଦୁର୍ଭିକ୍ଷ ହୋଇ ଥିଲା ସେଥିରେ ସାହାଯ୍ୟ କରି ମହାତ୍ମା ଗାନ୍ଧି ଏବଂ କାମ କରିବାକୁ ପଠାଇଥିଲେ ଠକ୍କର ବାପାଙ୍କୁ ।

୧୯୨୫ । ୨୬ । ୨୭ ଖ୍ରୀଷ୍ଟାବ୍ଦର ବନ୍ୟାଜନିତ ଦୁର୍ଭିକ୍ଷ କାମ ପାଇଁ ତାଙ୍କୁ ସାହାଯ୍ୟ କଲେ ଲାଲା ଲଜପତ ରାୟ । କାମ କରିବାକୁ ଆସିଥିଲେ ଆଣ୍ଡ୍ରୁଜ ସାହେବ ଓ ମୋହନ ଲାଲ ।

୧୯୨୮ ଖ୍ରୀଷ୍ଟାବ୍ଦ ଅପ୍ରେଲ ମାସରେ ବଡ଼ ଭାଇଙ୍କ ମୃତ୍ୟୁର ଅଳ୍ପ ପରେ ଗୋପବନ୍ଧୁ ଭଗ୍ନସ୍ୱାସ୍ଥ୍ୟରେ ଲାହୋର ଯାଇଥିଲେ ।

ସେଠାରେ କଂଗ୍ରେସରେ ଯୋଗ ଦେଇ ଫେରିଲେ ବେଳକୁ ବାଟରେ ଟାଇଫଏଡ୍ ରୋଗରେ ଆକ୍ରାନ୍ତ ହେଲେ । ଘରକୁ ଫେରି ଟିକି ଆରୋଗ୍ୟ ହେଲ ପରେ ସେ ପୁଣି କଲିକତା ଗଲେ । ସେଠାରେ ତାଙ୍କୁ ଜ୍ୱର ଲାଗିଥିଲା ଏବଂ ଜୁନ ୧୧ ତାରିଖ ଧାନ ନେଇ ସତ୍ୟବାଦୀକୁ ଫେରି ଆସିଲେ । ୧୭ ତାରିଖ ଯାଏ ଜ୍ୱର ହୋଇ ସନ୍ଧ୍ୟା ୭।୩॰ ବେଳେ ପରଲୋକରେ ମୃତ୍ୟୁ ଲଭିଲେ । ସେ ଖଣ୍ଡିଏ ଉଇଲ କରି ସତ୍ୟବାଦୀ ପ୍ରେସ ଆଦିକୁ ଓଡ଼ିଶାର ଦଳଗତ ସଂକୀର୍ଣ୍ଣତାରୁ ଦୂରରେ ରଖିବା ପାଇଁ ଲୋକ ସେବକ ସମାଜକୁ ଦାନ କରି ଦେଇଛନ୍ତି । ନିଜର ପାରିବାରିକ ସମ୍ପତ୍ତିକୁ ନିଜ ଗୃହ ଦେବତାଙ୍କୁ ଉତ୍ସର୍ଗ କରିଛନ୍ତି ।

ଏହିପରି ଭାବରେ ଗୋପବନ୍ଧୁ ସାରା ଓଡ଼ିଆ ଜାତିକୁ କନ୍ଦାଇ ମହାପ୍ରସ୍ଥାନ କଲେ । ଏ ଦେଶରେ ହୁଏତ ଧନେ ଅନ୍ୟ କେହି ତାଙ୍କ ଠାରୁ ଧନୀ ମାନୀ କର୍ମୀ ହୋଇ ଜନ୍ମିବ ମାତ୍ର ତାଙ୍କ ଭଳି ମହାନ ହୃଦୟବନ୍ତ କାହାର ହେବ କି ? ଗରିବ ଦୁଃଖୀଙ୍କ ପାଇଁ କାତର ବର୍ଣ୍ଣ, ତତ୍ପ୍ରିୟ ନିର୍ଦ୍ଦିଂଶପରେ ହୃଦୟ କାନ୍ଦିବ କି ?

ସେ ଲେଖିଥିଲେ:—

"ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାତ,
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।"

ଦେଶରେ ଆଜି ଏହା ହୋଇଛି । ପୂର୍ଣ୍ଣ ସ୍ୱାଧୀନତା ଭାରତ ପାଇଛି, କିନ୍ତୁ ବନ୍ଧୁଙ୍କ ଉକ୍ତିର ଏକାଂଶ ହୋଇ ନାହିଁ ।



ମୁଦ୍ରାକର—ଶ୍ରୀ ପଦ୍ମଚରଣ ଦାଶ, ଶ୍ରୀ ଜଗନ୍ନାଥ ମୁଦ୍ରଣ ପ୍ରେସ, କଟକ-୨

ପ୍ରାଇଜ୍ ଓ ଲାଇବ୍ରେରୀ ଉପଯୋଗୀ

## ଉତ୍କଳ ପ୍ରକାଶନୀର ଶ୍ରେଷ୍ଠ ଅବଦାନ

# ଅମର ଜୀବନୀମାଳା

ଲେଖକ :—ଲାଲା ନଗେନ୍ଦ୍ର କୁମାର ରାୟ

| | |
|---|---|
| ବୁଦ୍ଧଦେବ | କର୍ମବୀର ଗୌରୀଶଙ୍କର |
| ଠାକୁର ଶ୍ରୀରାମକୃଷ୍ଣ ପରମହଂସ | ମାଇକେଲ ମଧୁସୂଦନ |
| ଶ୍ରୀ ଚୈତନ୍ୟ | ଈଶ୍ୱରଚନ୍ଦ୍ର ବିଦ୍ୟାସାଗର |
| ଖାରବେଳ | କବିବର ରାଧାନାଥ ରାୟ |
| ଗଜପତି ପ୍ରତାପରୁଦ୍ର | ସାମନ୍ତ ଚନ୍ଦ୍ରଶେଖର |
| ଯଯାତିକେଶରୀ | ସାର୍ ଆଶୁତୋଷ |
| କୁଳବୃଦ୍ଧ ମଧୁସୂଦନ | ଉତ୍କଳମଣି ଗୋପବନ୍ଧୁ |

ମହାତ୍ମା ଗାନ୍ଧୀ

**ପ୍ରତ୍ୟେକ ଖଣ୍ଡର ମୂଲ୍ୟ ଦଶଅଣା**

**ଅନ୍ୟାନ୍ୟ ଜୀବନୀ ଶୀଘ୍ର ପ୍ରକାଶ ପାଇବ**

ପ୍ରାପ୍ତିସ୍ଥାନ :—

**ଦି ଉତ୍କଳ ଷ୍ଟୋର୍ସ**

ବାଲୁବଜାର, କଟକ—୨